# ସୁପରଫାଇଟର୍ସ!






ତାଙ୍କ ଖେଳର ପ୍ରଶଂସକମାନେ ତାଙ୍କୁ କହନ୍ତି 'ଲିଟିଲ୍ ମାଷ୍ଟର' । ପୃଥିବୀ ଜାଣେ ସେ ସୁପରବ୍ୟାଟସମ୍ୟାନ ।

କିନ୍ତୁ ସୁନିଲ ଗାଭାସ୍କର କହନ୍ତି, "ମୁଁ ହେଉଛି ସୁପରଫାଇଟର । ମୋର ଇଚ୍ଛା ମୋ ପୁଅ ବି ଏହିଭଳି ଜଣେ ହେଉ । ତେଣୁ ମୁଁ ତାଙ୍କୁ ପିଲାଦିନୁ ଶିଖେଇବାକୁ ଆରମ୍ଭ କରିଛି । ବ୍ୟବହାର କରିବାକୁ ଫୋରହ୍ୟାନ୍ସ ଫ୍ଲୋରାଇଡ ଟୁଥପେଷ୍ଟ — ଦାନ୍ତ କଣା ବିରୁଦ୍ଧରେ ସୁପରଫାଇଟର ।"

ଜୀବାଣୁମାନେ ଖାଦ୍ୟକଣରେ ରହି ବଢନ୍ତି ଓ ଅମ୍ଳ ଛାଡନ୍ତି । ଫଳରେ ଦାନ୍ତ କଣା ହୁଏ ।

ଫୋରହ୍ୟାନ୍ସ ସୁପରଫାଇଟରରେ ଏକ ସକ୍ରିୟ ଫ୍ଲୋରାଇଡ ଅଛି ଯାହା ଦାନ୍ତର ଏନାମେଲକୁ ଶକ୍ତ କରେ । ଏହା ଦ୍ୱାରା ଦନ୍ତକ୍ଷୟ କରୁଥିବା ଜୀବାଣୁଗୁଡ଼ିକର ପ୍ରତିରୋଧ ହୁଏ ।

ଆଉ ମଧ୍ୟ, ଫୋରହ୍ୟାନ୍ସର ବିଶେଷ ଆଷ୍ଟ୍ରିନଜେଣ୍ଟ ମାଢିକୁ ଟାଣି କରି ରଖେ । ଫଳରେ ଦାନ୍ତର ଭିତ୍ତି ଆହୁରି ଦୃଢ ହୁଏ ଓ ଆୟୁଷ ମଧ୍ୟ ବଢିଯାଏ ।

ସୁନିଲ ଆହୁରି କହନ୍ତି, 'ମୁ ମୋ ପୁଅକୁ ଦେଉଛି ଫୋରହ୍ୟାନ୍ସର ଯତ୍ନ । ଆପଣ ଦେଉଛନ୍ତି କି ?'



ଫୋରହ୍ୟାନ୍ସ

ସୁରକ୍ଷିତ ୩୨ଟି ଦାନ୍ତ

# ଫ୍ୟାରେକ୍ସ® ପ୍ରଥମ ପସନ୍ଦ !

## ନୂଆ ଉନ୍ନତ ଫ୍ୟାରେକ୍ସ®
## ଆପଣଙ୍କ ଶିଶୁ ପାଇଁ ଘନ ଖାଦ୍ୟର ଆଦର୍ଶ ଆରମ୍ଭ
## କାରଣ ଶିଶୁର ବିକାଶ ପାଇଁ ଏଥିରେ ଅଛି ଉପଯୋଗୀ ଉପାଦାନ !

ଫ୍ୟାରେକ୍ସରେ ଭରପୂର ପ୍ରୋଟିନ ଓ ଉପଯୁକ୍ତ ପରିମାଣରେ ସ୍ନେହସାର ଅଛି ଯାହା ଶିଶୁକୁ ସୁସ୍ଥ ସବଳ କରି ଗଢ଼େ । ଶିଶୁର କୋମଳ ହଜମ ପାଇଁ ଏହା ଉପଯୋଗୀ ।

ଫ୍ୟାରେକ୍ସରେ ଥିବା ଲୌହସାର ଶିଶୁର ରକ୍ତ ସୁସ୍ଥ ରଖେ ଓ ରୋଗ ପ୍ରତିରୋଧକ ଶକ୍ତି ଗଢ଼େ ।

ଫ୍ୟାରେକ୍ସରେ ଥିବା ୨:୧ ଆଦର୍ଶ ଅନୁପାତର କ୍ୟାଲସିଅମ ଫସଫରସ, ଶିଶୁର ଦାନ୍ତ ଓ ହାଡ଼କୁ ସୁସ୍ଥ ରଖେ ।

ପୁଷ୍ଟିଗୁଣରେ ପରିପୂର୍ଣ୍ଣ ଫ୍ୟାରେକ୍ସ ବର୍ତ୍ତମାନ ଆହୁରି ଅଧିକ ସୁସ୍ୱାଦୁ । ମିଶାଇବା ବି ଆହୁରି ସହଜ ।




ଦୁଧ ମିଶାଇବାର ଦରକାର ନାହିଁ!
କେବଳ ପାଣି ମିଶାଇ ଖୁଆନ୍ତୁ

ନୂଆ ଉନ୍ନତ ଫ୍ୟାରେକ୍ସ®

CLARION/B/GX/15/183/ORI

ବିଳାସିତାର ସୁଗନ୍ଧ
ସମୁଚିତ ଦାମରେ...

ପ୍ରେମ୍-ସତେଜତା ଆଣିବାର ସାବୁନ






ଜୟଲକ୍ଷ୍ମୀ
ଉତ୍ପାଦନ

ଗୋଲାପୀ ଓ ସବୁଜ ରଙ୍ଗରେ ଉପଲବ୍ଧ

Imageads 2107 Or

# ଡିସନୀ କେ ରଙ୍ଗ, ଲକ୍ସର କେ ସଙ୍ଗ

ପ୍ରବର୍ତ୍ତନ କରୁଛି—

ଲକି-ଡ୍ର
ଯୋଜନାରେ ଯୋଗ
ଦିଅନ୍ତୁ

## ଲକ୍ସର ଡିସ୍ନେ ଫନ୍ସେଟ୍

ଡୋନାଲ୍ଡ, ମିକି, ବମ୍ବି ଓ ଲକ୍ସର—
ଏମାନଙ୍କୁ ନେଇ ଗଢ଼ି ଉଠିଛି ଏକ
କୌତୁକିଆ ପରିବାର ।
ବର୍ତ୍ତମାନ, ଏକ ଡିସ୍ନେ ଫନ୍ସେଟ୍
ନିଅନ୍ତୁ । ଫଳରେ ଆପଣଙ୍କୁ ଏକ
ଲକି-ଡ୍ର କୁପନ ମିଳିବ ।
ଆଶ୍ଚର୍ଯ୍ୟ ଆଣି ଦେବା ପାଇଁ ରହିଛି—
୫୦୦ ପୁରସ୍କାର। ଏଣୁ କୌତୁକ ଉପଭୋଗ
କରନ୍ତୁ ।




Luxor®

CLARION D 349 ORIYA

# ଚନ୍ଦ୍ରମାମୁଁ

ସମ୍ପାଦକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍ଡୀ

ଓଡ଼ିଶାର ଲୋକକଥାରେ ଆସାମରେ ଅବସ୍ଥିତ କାମାକ୍ଷା ଦେବୀ 'କାଉଁରୀ କାମାକ୍ଷା' ନାମରେ ବିଦିତା । ଯାଦୁକର ଓ ମାନ୍ତ୍ରିକମାନେ "କାଉଁରୀ କାମାକ୍ଷାଙ୍କ ଆଜ୍ଞା" ବୋଲି କହି ସେମାନଙ୍କ କରାମତି ଦେଖାଇଥାନ୍ତି । ଏ ସଂଖ୍ୟାର ଚିତ୍ରକଥାରେ ସେହି ମନ୍ଦିରର ଇତିହାସ ଓ କିମ୍ବଦନ୍ତି ଦିଆଯାଇଛି ।

## ଅମରବାଣୀ

ଦୁର୍ଜନେନ ସମଂ ସଖ୍ୟଂ ପ୍ରୀତିଶ୍ଚାପି ନ କାରୟେତ୍ ।
ଉଷ୍ଣ ଦହତି ଚାଙ୍ଗାରଃ ଶୀତଃ କୃଷ୍ଣାୟତେ କରମ୍ ॥

[ଦୁର୍ଜନ ସାଙ୍ଗରେ କଦାପି ଘନିଷ୍ଠ ହେବ ନାହିଁ । ଜଳନ୍ତା ଅଙ୍ଗାର ଧରିଲେ ଯେମିତି ହାତ ପୋଡ଼ିଯାଏ, ଲିଭା ଅଙ୍ଗାରରେ ବି ସେମିତି ହାତ କଳା ହୁଏ । ଦୁର୍ଜନ ସଂସର୍ଗ ଯେଉଁ ଦିଗରୁ ହେଲେ ବି ଖରାପ ।]

ବର୍ଷ : ୨୦ ଫେବୃଆରି ୧୯୮୭ ଅଙ୍କ : ୮
ପ୍ରତି ସଂଖ୍ୟା : ଟ. ୨.୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦








ସାନ ମୁନ୍ନୁ'ର ମନ ମୋଟେ ଭଲ ନାହିଁ
ଖେଳ ଖେଳିବା ବିନା ତ ରହି ହୁଏ ନାହିଁ ।
ସିଏ କିସ କରିବ ଯ' ଦେହ ଭଲ ନାହିଁ
ଖେଳ ସାଙ୍ଗସାଥି କେହି ଶୋଧ ପାଖ ମାଡ଼ନ୍ତି ନାହିଁ ॥

ଏକା ଖେଳିବା ଲାଗି ବହୁ ଭାବି ଚିନ୍ତି
ସାନ୍ଧୁର୍ କାଢ଼ିଲା ସିଏ ୧୨ ରଙ୍ଗ ରଙ୍ଗିଆ ଖାଧି ।
କାଗଜ ଉପରେ ଦେଖ, କଲମ କରେ ଗଢି
ସୃଷ୍ଟି ହେଲା ଝୁଡ଼ି, ଜନ୍ତୁ, ବିରେଇ, ଗଣ୍ଡା, ହାତି ॥

ଏକେ ସବେ ଉପଯୋଗୀ, ସାଗୁଆ, ନେଳିଆ
ବାଦାମୀ, ହଳଦି ପୁଣି ପାଟଳ, ନାଲିଆ ।
ଭାଓଲେଟ୍, ଗାଇଗଢି ଆଉ ନାରଙ୍ଗି, କାଳିଆ
ତମ ଲାଗି ପ୍ରତି ଷେଟ୍ ଯେ ଦଶ ରଙ୍ଗିଆ

## ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



### ତିରିଶବର୍ଷର ଅନିଦ୍ର ରଜନୀ

ଆହାର ଯେପରି ଜୀବନ ଧାରଣ ପାଇଁ ଅପରିହାର୍ଯ୍ୟ ନିଦ୍ରା ସେହିପରି ଅପରିହାର୍ଯ୍ୟ ବୋଲି ଜଣାଶୁଣା କଥା । କିନ୍ତୁ କ୍ୟୁବା-ନିବାସୀ ଅମାସ୍ ଇଜ୍‌କ୍‌ବୋୟାଡ୍ ନାମକ ବ୍ୟକ୍ତି ତିରିଶ ବର୍ଷ ଧରି ଶୋଇ ନାହାନ୍ତି । "ପୃଥିବୀର ଚିକିତ୍ସା ବିଜ୍ଞାନ" ଇତିହାସରେ ଏଭଳି ଘଟଣା ଦ୍ୱିତୀୟ ନାହିଁ ବୋଲି ମନୋବୈଜ୍ଞାନିକ ପେଡ୍ରୋଗାର୍ସିଆ କହନ୍ତି ।

### ଦୀର୍ଘଜୀବନର ରହସ୍ୟ



ବ୍ରିଟେନ୍-ବାସୀ ୧୦୮ ବର୍ଷ ବୟସ୍କ ବୃଦ୍ଧ ନିଜ ଦୀର୍ଘ ଜୀବନର ରହସ୍ୟ ସମ୍ପର୍କରେ କହନ୍ତି କି ସେ ମଦ ପିଅନ୍ତି ନାହିଁ; ଧୂମପାନ କରନ୍ତି ନାହିଁ; ସର୍ବଦା କୌଣସି ଉଚିତ କାମରେ ଲାଗି ରହିଥାନ୍ତି ।

### ସମଝଦାର ପଶୁ



ନିଉୟର୍କ ଚିଡ଼ିଆଖାନାର ଭୂତପୂର୍ବ ଅଧ୍ୟକ୍ଷ ଡକ୍ଟର୍ ନଲ୍ଡବ୍ ଲେୟର୍‌ଙ୍କ ମତରେ ସିମ୍ପାଞ୍ଜି, ଓରାଙ୍ଗ ଓଟାଙ୍ଗ୍, ହାତୀ, ଗରିଲା, କୁକୁର, ଘୋଡ଼ା, ସମୁଦ୍ରସିଂହ, ଭାଲୁ ଓ ବିଲେଇଙ୍କର ଯେ ଖାଲି ସ୍ମରଣ ଶକ୍ତି ଯଥେଷ୍ଟ, ତାହା ନୁହେଁ । ସେମାନେ ଅନେକ କଥା ବୁଝିପାରନ୍ତି ମଧ୍ୟ ।

ପ୍ରାଚୀନ ସାହିତ୍ୟର ଚରିତ୍ର :

# ଜୟନ୍ତୀ

କାହିଁ କେଉଁ ପ୍ରାଚୀନ କାଳର କଥା । ଦୈତ୍ୟ-ଗୁରୁ ଶୁକ୍ରାଚାର୍ଯ୍ୟ କୈଳାସ ପର୍ବତ ଉପରେ ଶିବଙ୍କୁ ଆରାଧ୍ୟ କରି ଘୋର ତପସ୍ୟା ଆରମ୍ଭ କଲେ । ଦେବଗଣ ଶଙ୍କି ଗଲେ । କୌଣସି ମତେ ତାଙ୍କ ତପସ୍ୟାରେ ବିଘ୍ନ ଘଟାଇବାକୁ ମନସ୍ଥ କରି ସେମାନେ ଦେବରାଜ ଇନ୍ଦ୍ରଙ୍କର ଅସାମାନ୍ୟା ସୁନ୍ଦରୀ କନ୍ୟା ଜୟନ୍ତୀଙ୍କୁ ଯାଇ କହିଲେ, "ଦେବଗଣଙ୍କ କଲ୍ୟାଣ ପାଇଁ ତମକୁ ଗୋଟାଏ କାମ କରିବାକୁ ହେବ ।"

"କି କାମ ?" ଜୟନ୍ତୀ ପଚାରିଲେ ।

"କାମଟି କରିବ ବୋଲି ଆଗେ କଥା ଦିଅ । ତା'ପରେ କହିବୁଁ ।"

"ହେଉ । କଥା ଦେଲି ।" ଜୟନ୍ତୀ କହିଲେ । ଦେବଗଣ ତାଙ୍କୁ କହିଲେ କି ସେ କୈଳାସ ପର୍ବତକୁ ଯାଇ ଶୁକ୍ରାଚାର୍ଯ୍ୟଙ୍କ ସେବା ଶୁଶ୍ରୂଷା କରିବେ ଓ ତାଙ୍କୁ ବଶ କରିବେ । ଜୟନ୍ତୀ ବୁଝିଲେ କି ଦେବତାମାନେ ଶୁକ୍ରାଚାର୍ଯ୍ୟଙ୍କ ତପସ୍ୟା ପଣ୍ଡ କରିବାକୁ ଚାହାନ୍ତି । ସେ କାହାର ତପସ୍ୟାରେ ବିଘ୍ନ ଉପୁଜାଇବାକୁ ପ୍ରସ୍ତୁତ ନଥିଲେ । କିନ୍ତୁ ଏଣେ ତ କଥା ଦେଇଛନ୍ତି । କରିବେ କ'ଣ ? ସେ ଯାଇ ନୀରବରେ ଶୁକ୍ରାଚାର୍ଯ୍ୟଙ୍କ ସେବା କଲେ । ଶୁକ୍ରାଚାର୍ଯ୍ୟଙ୍କ ତପସ୍ୟା ବିଧି ପୂର୍ବକ ସମାପ୍ତ ହେଲା । ଶୁକ୍ରାଚାର୍ଯ୍ୟ ଜୟନ୍ତୀଙ୍କୁ କିଛି ବର ଦେବାକୁ ଚାହିଁଲେ । ସେତେବେଳେ ଯାଇ ଜୟନ୍ତୀ ତାଙ୍କ ବଧୂ ହେବେ ବୋଲି କହିଲେ । ଶୁକ୍ରାଚାର୍ଯ୍ୟ ରାଜି ହେଲେ ।

ଜୟନ୍ତୀ ଶୁକ୍ରାଚାର୍ଯ୍ୟଙ୍କ ତପସ୍ୟାରେ ବିଘ୍ନ ଘଟାଇଲେ ନାହିଁ; ଅଥଚ ଦେବଗଣଙ୍କୁ ଦେଇଥିବା ନିଜ କଥା ବି ରକ୍ଷିଲେ ।





# ସନ୍ନ୍ୟାସ ସମୟ

ଗୋଦାବରୀ ନଦୀ ତୀରରେ ରହୁଥିଲେ ଜଣେ ସାଧୁ । ପାଖରେ ଗାଁଟିଏ ଥିଲା । ଗାଁ ଲୋକେ ସାଧୁଙ୍କୁ ବଡ଼ ସ୍ନେହ ଶ୍ରଦ୍ଧା କରୁଥିଲେ ଓ ତାଙ୍କ ପାଇଁ ସେମାନେ କୁଡ଼ିଆଟିଏ ବନାଇ ଦେଇଥିଲେ । ବର୍ଷକରେ ଥରେ ସେମାନେ ସାଧୁ ରହୁଥିବା କୁଡ଼ିଆ ମରାମତି କରି ଦେଉଥିଲେ । ସାଧୁଙ୍କର ଯାହା ଦରକାର, ସେମାନେ ସବୁ କରି ଦେବାକୁ ପ୍ରସ୍ତୁତ ଥିଲେ । କିନ୍ତୁ ସାଧୁଙ୍କର ବିଶେଷ କିଛି ଦରକାର ନଥିଲା ।

ସାଧୁ ସବୁଦିନେ ଥରେ ଗାଁ ଭିତରକୁ ବାହାରି ଯାଉଥିଲେ । କାହାରି ଘରୁ ହେଲେ କିଛି ଖାଦ୍ୟ ଧରି ଫେରୁଥିଲେ । ବାସ୍ । ସାରାଦିନ ସେ କୁଡ଼ିଆ ଭିତରେ କିମ୍ବା ନଈ କୂଳରେ ଧ୍ୟାନରେ ବସି ରହୁଥିଲେ । କେବେ କେବେ ଗାଁ ଲୋକେ କୌଣସି ସମସ୍ୟା ଧରି ତାଙ୍କ ପାଖକୁ ଆସିଲେ ସେ ତାହାର ସମାଧାନ କରି ଦେଉଥିଲେ ।

ଦିନେ ଗାଁ ପାଖର ଜମିଦାର ଆସି ସାଧୁଙ୍କୁ କହିଲେ, "ବାବା, ଆପଣ କାହିଁକି ସବୁଦିନେ ଯା' ତା' ଘରକୁ ଖାଦ୍ୟ ପାଇଁ ଯିବେ ? ମୁଁ ତିନିଓଳି ଯାକ ଆପଣଙ୍କ ପାଖକୁ ଖାଦ୍ୟ ସାମଗ୍ରୀ ପଠାଇଦେବି ।"

ସାଧୁ କହିଲେ, "ପୁଅ, ତମ ଶ୍ରଦ୍ଧା ଭାବ ଯୋଗୁଁ ମୁଁ ଖୁବ୍ ଖୁସି ହେଲି । କଥା କ'ଣ କି, ମୋର ତିନିଓଳି ଭୋଜନ ଲୋଡ଼ା ନୁହେଁ । ଓଳିଏ ଖାଇଲେହିଁ ଯଥେଷ୍ଟ । ବର୍ଷକୁ ଖଣ୍ଡିଏ ଧୋତି, ଖଣ୍ଡିଏ ଗାମୁଛା ଓ ଖଣ୍ଡିଏ ଚଦର ହେଲେ ମୋର ଯଥେଷ୍ଟ । ମୁଁ ଗାଁକୁ ଯାଏଁ ଲୋକଙ୍କ ପ୍ରତି ସ୍ନେହ ଯୋଗୁଁ । ସେମାନେ ମୋତେ କିଛି ଦେଇ ଆନନ୍ଦିତ ହୁଅନ୍ତି । ସେମାନଙ୍କୁ କାହିଁକି ସେଥିରୁ ବଞ୍ଚିତ କରିବା ?"

ସୁରେନ୍ଦ୍ର



ଜମିଦାର ନିଜ ଭୁଲ ବୁଝିଲେ। ସେ ସାଧୁଙ୍କୁ ପ୍ରଣାମ କଲେ ଓ ନିଜ ଘରକୁ ଫେରିଗଲେ।

ଅଦୂରରେ ଠିଆ ହୋଇ ସେ ଦୁହିଁଙ୍କ କଥା ଶୁଣୁଥିଲା ରାମୁ। ତା'ର ବାପା ମା ନଥାନ୍ତି। କାହାରି ଘରେ ଆଶ୍ରୟ ପାଇବା ଆଶାରେ ସେ ବୁଲୁଥାଏ। ସାଧୁଙ୍କ ପ୍ରତି ତା' ମନରେ ବହୁତ ଶ୍ରଦ୍ଧା ଜାତ ହେଲା। ସେ ଯାଇ ତାଙ୍କୁ ପ୍ରଣାମ କଲା ଓ ନିଜ ଦୁଃଖ କହିଲା। ତା'ପରେ ନିବେଦନ କଲା, "ବାବା, ମୋର ସଂସାର ସୁଖ ପ୍ରତି କୌଣସି ଲୋଭ ନାହିଁ। ଆପଣ ମୋତେ ଆପଣଙ୍କ ପାଖରେ ରହି ଆପଣଙ୍କ ସେବା କରିବାର ସୁଯୋଗ ଦିଅନ୍ତୁ।"

ସାଧୁ କହିଲେ, "ବାପା, ତୋର ଦୁଃଖ ମୁଁ ବୁଝୁଛି। ଗୋଟିଏ କାମ କରିବା। ତୁ ଆଶ୍ରୟ ଲୋଡୁଛୁ ତ? ବେଶ୍। ଏ ଗାଁରେ କେତେଜଣ ଥିଲାବାଲା ଲୋକ ଅଛନ୍ତି। ସର୍ବୋପରି ଅଛନ୍ତି ଜମିଦାର। ମୁଁ ଅନୁରୋଧ କଲେ ସିଏ ହେଲେ ତୋତେ ଘରେ ରଖିନେବେ। ତୁ ଯେପରି ଦୁଇ ଅକ୍ଷର ପଢ଼ିବୁ, ସେ ବ୍ୟବସ୍ଥା ମଧ୍ୟ କରିଦେବି। ହେଲା?"

"ନାହିଁ ବାବା, ମୁଁ ସେପରି ଭାବରେ କୌଣସି ଗୃହସ୍ଥ ଘରେ ରହିବାକୁ ଚାହେଁ ନାହିଁ। ମୋର ସଂସାର ପ୍ରତି କୌଣସି ଆକର୍ଷଣ ନାହିଁ। ମହାପୁରୁଷମାନଙ୍କ ସେବା କଲେ ପରମ ପୁଣ୍ୟ ହୁଏ ବୋଲି ମୁଁ ଜାଣେ। ଆପଣଙ୍କ ପାଖରେହିଁ ରହିବି। ଆପଣଙ୍କ ସେବା କରିବି। ଆପଣଙ୍କ ଭଳି ସନ୍ନ୍ୟାସୀ ହେବି।" ରାମୁ କହିଲା।

ସନ୍ନ୍ୟାସୀ ଧୀର କଣ୍ଠରେ କହିଲେ, "ତୋର କ'ଣ ସେପରି ସମୟ ହେଲାଣି?" କିନ୍ତୁ ରାମୁ ତାଙ୍କଠିଁ ରହିବ ବୋଲି ବହୁତ ଜିଗର କଲା।

ସାଧୁ ସେଥିରେ ରାଜି ହେଲେ। ରାମୁ ସେଇଠି ରହିଲା। ସାଧୁ ତାକୁ ଲେଖାପଢ଼ା ବି ଶିଖାଇଲେ। ଗାଁ ଲୋକେ ଜଣଙ୍କ ବଦଳରେ ଦୁଇଜଣଙ୍କ ପାଇଁ ଆନନ୍ଦରେ ଖାଦ୍ୟ ଯୋଗାଇ ଦେଲେ।

କେଇବର୍ଷ ଗଲା। ଦିନେ ସାଧୁ କହିଲେ, "ବାପା, ମୁଁ ଏଥର ଅନ୍ୟତ୍ର ଯିବି। ତୋତେ

ଜମିଦାରଙ୍କ ଘରେ ରଖାଇ ଦେବି । ଭଲରେ ରହିବୁ ।"

ରମୁ କାନ୍ଦି ପକାଇ କହିଲା, "ବାବା ମୁଁ ସନ୍ନ୍ୟାସୀ ହୋଇ ଆପଣଙ୍କ ସାଥିରେ ଯିବି ।"

ସାଧୁ ହସିଲେ ଓ କହିଲେ, "ନା, ସେପାଇଁ ତୋର ସମୟ ହୋଇ ନାହିଁ ।"

"ତେବେ ମୋତେ ଏଇଠି ରହିବାକୁ ଅନୁମତି ଦିଅନ୍ତୁ । ମୁଁ ଆପଣଙ୍କ କୁଡ଼ିଆରେ ଆପଣଙ୍କ ଭଳି ସାଧୁ ଜୀବନ ଯାପନ କରିବି । ଆପଣ କେବେ ଫେରିବେ ?" ରମୁ ପଚାରିଲା ।

"ସେକଥା କହି ପାରିବି ନାହିଁ । ତେବେ ତୁ ଏଇଠି ରହିପାରୁ ।" ଏହା କହି ସାଧୁ ଚାଲିଗଲେ ।

"ଆପଣ ଯେବେ ଫେରିବେ, ଦେଖିବେ ମୁଁ ଆପଣଙ୍କ ଭଳି ଆଦର୍ଶ ଜୀବନଯାପନ କରୁଛି । ମୋତେ ସିନା ଆପଣ ସାଥିରେ ନେଉ ନାହାନ୍ତି, କିନ୍ତୁ ମୋର ସନ୍ନ୍ୟାସ ଜୀବନ ଛଡ଼ା ଅନ୍ୟ କୌଣସି ଜୀବନ ପ୍ରତି ଆକର୍ଷଣ ନାହିଁ ।" ରମୁ ଗମ୍ଭୀର କଣ୍ଠରେ କହିଲା ।

ଗାଁ ଲୋକେ ସାଧୁ ଚାଲିଯାଇଥିବାର ଜାଣି ଦୁଃଖିତ ହେଲେ । ତେବେ ରମୁ ତାଙ୍କ ସ୍ତୁତି ବନ୍ଦନ କରୁଥିବାରୁ ରମୁକୁ ସେମାନେ ବେଶ୍ ଆଦର କଲେ ।

ଦିନେ ରମୁ ଦେଖିଲା, ତା' ଲୁଗା ମୂଷା କାଟି ଦେଇଛି । ସେ ଏକଥା ଦାମୋଦର ନାମକ ଜଣେ ଗ୍ରାମବାସୀକୁ କହିଲା । ପରଦିନ



ଦାମୋଦର ତାକୁ ଆଣି ଗୋଟାଏ ବିଲେଇ ଛୁଆ ଧରାଇ ଦେଇ କହିଲା, "ତମେ ହୁଏତ ମୂଷାକଟା ଲୁଗା ବଦଳରେ ଖଣ୍ଡିଏ ନୂଆ ଲୁଗା ଆଣିବ । କିନ୍ତୁ ସେଥିରେ ସମସ୍ୟାର ସମାଧାନ ହେବ ନାହିଁ । ମୂଷା ବିରୁଦ୍ଧରେ ଏହି ହେଲା ଅମୋଘ ଅସ୍ତ୍ର ।"

ରମୁ ବିଲେଇ ଛୁଆଟି ରଖିଲା । କିନ୍ତୁ ବିଲେଇକୁ ଖାଇବାକୁ ଦେବା ପାଇଁ ତା' ପାଖରେ କିଛି ଖାଦ୍ୟଦ୍ରବ୍ୟ ସଞ୍ଚିତ ହୋଇ ରହି ନଥାଏ । ଜଣେ ଗ୍ରାମବାସୀ ତାକୁ କହିଲା, "ସାନ ସାଧୁ ! ତମେ ଗୋଟାଏ କାମ କର । ଜମିଦାରକୁ ଗୋଟାଏ ଗାଈ ମାଗ । ତା'ହେଲେ ବିଲେଇକୁ ଖୋରାକ



ଯୋଗାଇବା ଦିଗରେ ତମକୁ ଆଉ ଚିନ୍ତା କରିବାକୁ ପଡ଼ିବ ନାହିଁ।"

ରମୁ ଜମିଦାର ପାଖକୁ ଯିବା ମାତ୍ରେ ସେ ଖୁସି ହୋଇ ତାକୁ ଦୁଧିଆଳ ଗାଈଟିଏ ଦେଇଦେଲେ। ତେଣିକି ରମୁ ଗାଈକୁ ଖୁଆଇବା ନିମନ୍ତେ ଗାଁରୁ ଘାସ ସଂଗ୍ରହ କରେ।

ଦିନେ ହରିଦାସ ନାମକ ଲୋକ ତାକୁ କହିଲା, "ସାନ ସାଧୁ! ତମେ କେତେଦିନ ଧରି ଏମିତି ଘାସ ଗୋହାଇ ବୁଲୁଥିବ? ଏଇଟା କ'ଣ ସୁନ୍ଦର କଥା? ମୋ କଥା ଶୁଣ। ତମ ଏ ଘରକୁ ଲଗି ଯେଉଁ ଜମିତକ ପଡ଼ିଛି, ଏ ସବୁ ଜମିଦାରଙ୍କର। କେବେ କେହି ଏଥିରେ ଘାସଟିଏ ବି ବଢ଼ାଇ ନାହାନ୍ତି। ଆମେ ଏଥିରେ କିଛି ପନିପରିବା ଗଛଲତା ଉପୁଜାଇଲେ ଜମିଦାରଙ୍କର କିଛି କ୍ଷତି ହେବ ନାହିଁ। କାମ ମୁଁ କରିବି। ତମକୁ ଅଧେ ଫସଲ ଦେବି ଓ ନିଜେ ଅଧେ ନେବି। ଗାଈ ପାଇଁ ବି ଘାସପତ୍ରର ଅଭାବ ହେବ ନାହିଁ।"

ରମୁ ମନକୁ ଏକଥା ପାଇଲା। ସେ ଯାଇ ଜମିଦାରଙ୍କୁ କହିବା ମାତ୍ରେ ଜମିଦାର କହିଲେ, "ଆରେ ବାବୁ, ସେ ଜମିତକ ତ ପଡ଼ିଆ ପଡ଼ିଛି। ତମର ଯାହା ଖୁସି କଲେ ମୁଁ କାହିଁକି ଆପତ୍ତି କରିବି? ସେ ଜମି ତମର ହୋଇଗଲା ବୋଲି ଜାଣ!"

ରମୁ ଓ ହରିଦାସର ଆନନ୍ଦ କହିଲେ ନ ସରେ। ରବିଫସଲ ଚାଷ ଆରମ୍ଭ ହୋଇଗଲା। ହରିଦାସ ଖୁବ୍ କାମିକା ଲୋକ। ତା' ସାଥିରେ ଯୋଗ ଦେଲେ ତା' ସ୍ତ୍ରୀ ଓ ଝିଅ। କ୍ରମେ ସେମାନଙ୍କ ସହ ରମୁର ସମ୍ପର୍କ ଗାଢ଼ ହେଲା। ଏଣିକି ରମୁ ଆଉ ଗାଁ ଭିତରକୁ ଯାଇ ଆହାର ସଂଗ୍ରହ କରେ ନାହିଁ। ହରିଦାସ ଘରେ ଯାହା ରୋଷେଇ ହୁଏ, ସେଥିରୁ ସେମାନେ ତାକୁ ଖୁସିରେ ଖାଇବାକୁ ପିଇବାକୁ ଦିଅନ୍ତି।

କେଇ ବର୍ଷ ଗଲା। ରମୁର ଅବସ୍ଥା ଖୁବ୍ ସ୍ୱଚ୍ଛଳ ହେଲା। କୁଡ଼ିଆ ଭାଙ୍ଗି ସେ ଗୋଟିଏ ସୁନ୍ଦର ଘର କଲା। ତା' ପାଇଁ ସବୁ ହରିଦାସ କରି ଦେଉଥାଏ।

ଦିନେ ହରିଦାସ କହିଲା, "ବାବୁ, ତମେ ଏଣିକି ଯୁବକ ହେଲଣି। ମୋ ଝିଅ ଶୋଭାକୁ

ତ ଜାଣ । ମୋର ଅନୁରୋଧ, ତମେ ତାକୁ ବାହା ହୁଅ ।”

ରାମୁ ଆପତ୍ତି କଲା ନାହିଁ । ହରିଦାସର ଆଉ କେହି ନଥାନ୍ତି । ରାମୁ ବି ସେତେବେଳକୁ ତାକୁ ବାପା ଭଳି ଦେଖୁଥାଏ ।

ରାମୁ ସହ ଶୋଭାର ବାହାଘର ହୋଇଗଲା । ରାମୁର ପିଲାପିଲି ହେଲେ । ଗୃହୁଁ ଗୃହୁଁ ଦିନ ଗଡ଼ି ଯାଉଥାଏ । ସାଧୁ ସେଠାରୁ ବିଦାୟ ହୋଇ ଯିବାର ଅନେକ ବର୍ଷ ହୋଇଗଲାଣି । ବୁଢ଼ା ଜମିଦାର ମରିଗଲେ ଓ ତାଙ୍କ ପୁଅ ନୂଆ ଜମିଦାର ହେଲେ । ସେ ନିଜ ସମ୍ପତ୍ତି ବାଡ଼ିର ହିସାବ ଦେଖିବାକୁ ଆରମ୍ଭ କଲେ । ରାମୁ ଭୋଗ କରୁଥିବା ଜମିତକ ତାଙ୍କର ବୋଲି ଜାଣି ସେ ରାମୁକୁ ଡକାଇ କହିଲେ, “ଜମି କିଣି ନିଅ, ନହେଲେ ଫସଲରୁ ଭାଗ ଦିଅ, ନହେଲେ ଛାଡଦିଅ ।”

ରାମୁ କହିଲା କି ପୂର୍ବ ଜମିଦାର ତାକୁ ସେ ଜମିତକ ଦେଇ ଦେଇଥିଲେ । ନୂଆ ଜମିଦାର ସେକଥା ଶୁଣିଲେ ନାହିଁ । ଦୁହିଁଙ୍କ ଭିତରେ ଝଗଡ଼ା ହେଲା । ଗାଁରେ ରାମୁ ଓ ତା’ ଶ୍ୱଶୁର ହରିଦାସଙ୍କର କିଛି ସମର୍ଥକ ଥିଲେ । ସେମାନେ କହିଲେ ଜମିଦାରଙ୍କ ଦାବି ଭୁଲ୍ । କୋଡ଼ିଏ ବର୍ଷରୁ ଅଧିକ ରାମୁ ଜମି ଭୋଗ କରୁଛି । କେବେ ଜମିଦାର କିଛି ଆପତ୍ତି କରି ନାହାନ୍ତି । ତେଣୁ ସେ ଜମି ରାମୁର ।

ଦିନେ ଦୁଇପକ୍ଷ ଭିତରେ ଭୀଷଣ କଳି ହେଲା । ଜମିଦାରଙ୍କ ଲୋକେ ଠେଙ୍ଗାବାଡ଼ି ଧରି ଆସିଗଲେ । ମାଡ଼ଗୋଳ ଆରମ୍ଭ



ହେବ, ଏତିକିବେଳେ ସେଠାରେ ପହଞ୍ଚିଲେ ଜଣେ ବୁଢ଼ା ସାଧୁ । ପ୍ରଥମେ ତାଙ୍କୁ ରାମୁହିଁ ଚିହ୍ନି ପକାଇଲା ଓ ତାଙ୍କ ଗୋଡ଼ତଳେ ପଡ଼ିଗଲା । କ୍ରମେ ନୂଆ ଜମିଦାର ବି ତାଙ୍କୁ ଚିହ୍ନିଲେ ଓ ଲମ୍ବ ହୋଇ ପ୍ରଣାମ କଲେ ।

ଅନେକ ବର୍ଷ ପରେ ସାଧୁ ଫେରି ଆସିଥିବାରୁ ସବୁ ଲୋକେ ଆନନ୍ଦିତ ! କଳି କଥା ସମସ୍ତେ ଭୁଲିଗଲେ । ସାଧୁ କିଛି ସମୟ ବିଶ୍ରାମ କରି ସବୁ ପଗୃରି ବୁଝିଲେ ।

"ବାବା ! ଆପଣ ଯାହା ନିଷ୍ପତ୍ତି କରିବେ, ମୋର ସେଥିରେ କିଛି କହିବାର ନାହିଁ ।" ଜମିଦାର କହିଲେ ।

"ପୁଅ ! ତୋ ବାପା ଯେତେବେଳେ ଏ ଜମି ତାକୁ ଭୋଗ କରିବାକୁ ଦେଇଛନ୍ତି, ତୁ ଛଡ଼ାଇ ନେବା ତୋ ବାପାଙ୍କ ସ୍ମୃତି ପ୍ରତି ଅସୁନ୍ଦର ହେବ । ରାମୁର ପରିବାର ଯେଉଁ ଫସଲ କରିବେ, ସେଥିରୁ ଫଳଟିଏ ନେଇ ତୋତେ ଭେଟିଦେବେ ।" ସାଧୁ କହିଲେ ।

"ଯେ ପର୍ଯ୍ୟନ୍ତ ସେମାନଙ୍କର ଇଚ୍ଛା ହେଉଥିବ । ନହେଲେ ସେତିକି ବି ମୋର ଦରକାର ନାହିଁ । ମୁଁ ଜମି ତା' ନାମରେ ଦାନ କରିଦେବି ।" ଜମିଦାର କହିଲେ ।

"ଜମିଦାର ସାହେବ, ମୋ ନାମରେ ସେ ଜମି କରିବା ଦରକାର ନାହିଁ । ମୋ ପୁଅ ନାମରେ ସବୁ କରିଦେବେ ।" ରାମୁ କହିଲା ।.

ସେହି ରାତିରେ ରାମୁ କାନ୍ଦି କାନ୍ଦି ସାଧୁଙ୍କୁ କହିଲା, "ବାବା, ସେଥର ଆପଣ କହିଲେ ସଂନ୍ୟାସ ନେବା ପାଇଁ ମୋର ବେଳ ଆସି ନାହିଁ । ଏଥର କ'ଣ କହୁଛନ୍ତି ?"

ସାଧୁ ହସିଲେ ଓ କହିଲେ, "ତୋ ପୁଅ ବଡ଼ ହୋଇ ଗଲାଣି । ସେ ସଂସାର ସମ୍ଭାଳିବ । ଏଥର ତୋର ସନ୍ନ୍ୟାସ ପାଇଁ ସମୟ ହୋଇ ଯାଇଛି ।"

ପରଦିନ ଭୋର୍ ରାମୁ ଗାଁ ଛାଡ଼ି ରିକ୍ତ ହସ୍ତରେ ସାଧୁଙ୍କ ସହ ବାହାରିଗଲା ।





# ଚିନ୍ତାଶୀଳ କର୍ମଚାରୀ

ଜମିଦାର ସୁନ୍ଦର ଶ୍ରୀଧର ସର୍ବଦା ମଉଜ୍ ମଜ୍‌ଲିସ୍‌ରେ ରହୁଥିଲେ । ନିଜର ବିଶେଷ ଚିନ୍ତାଶକ୍ତି ନାହିଁ ବୋଲି ସେ ଜାଣିଥିଲେ । କିନ୍ତୁ ଯେଉଁମାନେ ଦାର୍ଶନିକ, ଯେଉଁମାନେ ଚିନ୍ତାଶୀଳ, ସେମାନଙ୍କ ପ୍ରତି ତାଙ୍କର ବହୁତ ସମ୍ମାନ ରହିଥିଲା । ସେ ତାଙ୍କ ବାଲ୍ୟ ଶିକ୍ଷକଙ୍କୁ ପଚାରିଲେ, "ଅବଧାନେ ! ଆପଣ ତ ଜାଣନ୍ତି ମୋର ଭାବିବା ଚିନ୍ତିବାକୁ ବେଳ ନାହିଁ । କିନ୍ତୁ ଏପରି ଜଣେ ଲୋକ ମୋତେ ଦିଅନ୍ତୁ, ଯିଏ ସବୁବେଳେ ମୋ ସାଙ୍ଗରେ ରହୁଥିବ ଓ ନାନା ବିଷୟରେ ଚିନ୍ତା କରୁଥିବ ଓ ମୁଁ ପଚାରିଦେବା ମାତ୍ରେ କ'ଣ ଚିନ୍ତା କରୁଛି କହିବ । ତା'ହେଲେ ମୁଁ ନିଜେ ଚିନ୍ତା କରିବା ଯାହା, ସିଏ ଚିନ୍ତା କରିବା ବି ସେଇ ଏକା କଥା ହେବ ।"

ଅବଧାନେ କହିଲେ, "ବାଃ ବେଶ୍ କଥା । ମୋ ଶଳା ବାବୁରାମ କାମଦାମ ସିନା କରେ ନାହିଁ, କିନ୍ତୁ ସର୍ବଦା ଚିନ୍ତା କରୁଥାଏ । ସେ ଆପଣଙ୍କ ପାଇଁ ଚିନ୍ତା କରୁଥିବ ।"

ବାବୁରାମ ବେଶ୍ ଭଲ ଦରମାରେ ଜମିଦାରଙ୍କ ପାଖରେ ତାଙ୍କର ଚିନ୍ତାଶୀଳ କର୍ମଚାରୀ ଭାବରେ ନିଯୁକ୍ତ ହେଲା । ସର୍ବଦା ସେ ଜମିଦାରଙ୍କ ପାଖେ ପାଖେ ଥାଏ । ଜମିଦାର ମଝିରେ ମଝିରେ ପଚାରି ଦିଅନ୍ତି, "କ'ଣ ଚିନ୍ତା କରୁଛ କହୋ ?" ସେ ଯାହା ଚିନ୍ତା କରୁଥାଏ, ନିଷ୍କପଟରେ କହିଦିଏ ।

ଥରେ ରାତିରେ କିଛି ଶବ୍ଦ ଯୋଗୁଁ ଜମିଦାରଙ୍କ ନିଦ ଭାଙ୍ଗିଗଲା । ସେ ଉଠି ପଡ଼ି ତାଙ୍କ କୋଠରୀ ବାହାରକୁ ଆସିଲେ । ବାରନ୍ଦାରେ ସତରଞ୍ଜି ପକେଇ ବାବୁରାମ ଶୋଇଥାଏ । ସେ ଚେଇଁଥିବାର ଦେଖି ଜମିଦାର ପଚାରିଲେ, "କ'ଣ ଚିନ୍ତା କରୁଛ ?" ସେ ଉତ୍ତର ଦେଲା, "ଚୋରମାନେ ଅନ୍ଧାର

ରବି ପ୍ରକାଶ

ରାତିରେ କାହିଁକି ବାହାରନ୍ତି, ସେଇଆ ମୁଁ ଭାବୁଛି ।"

"ବେଶ୍, ବେଶ୍ ।" କହି ଜମିଦାର ପୁଣି ଯାଇ ଶୋଇ ପଡ଼ିଲେ । କିନ୍ତୁ ତାଙ୍କୁ ନିଦ ନ ଆସିବାରୁ ସେ ପୁଣି ବାହାରକୁ ଆସି ପଚାରିଲେ, "କହୋ, ଶୋଇପଡ଼ିଲ କି ?"

"ନା, ଆଜ୍ଞା, ଚିନ୍ତା କରୁଛି । ଚୋରମାନେ ଧନୀମାନଙ୍କ ଘରକୁ କାହିଁକି ଚୋରି କରିବାକୁ ଆସନ୍ତି, ସେଇ କଥା ।"

ଜମିଦାର ପୁଣି ଯାଇ ଶୋଇ ପଡ଼ିଲେ । ତାଙ୍କୁ ନିଦ ଲାଗିଗଲା । ଭୋର ବେଳକୁ ସେ ବାରଣ୍ଡାକୁ ଆସି ଦେଖିଲେ ବାବୁରାମ ବସିଛି । "କହୋ, କ'ଣ ଚିନ୍ତା କରୁଛ ?"

"ହଜୁର୍, ଚୋରମାନେ ସେପଟ କୋଠରୀରୁ ଯେଉଁ ଟଙ୍କା କଉଡ଼ି କାଢ଼ି ନେଇଗଲେ, ତାକୁ ନେଇ କ'ଣ କରିବେ, ସେଇଆ ଭାବୁଛି ।"

ଜମିଦାର ଚମକି ପଡ଼ିଲେ । "କ'ଣ ହେଲା! ଚୋରମାନେ ଟଙ୍କା କଉଡ଼ି ସବୁ ନେଇଗଲେ ?" ଏହା କହି ସେ ଅନ୍ୟ କୋଠରୀକୁ ଦୌଡ଼ିଯାଇ ଦେଖିଲେ ସିନ୍ଦୁକ ଭଙ୍ଗା ହୋଇ ପଡ଼ିଛି । ଭିତରେ ଥିବା ଧନ-ଦୌଲତ ସବୁ ଯାଇଛି । ସେ ରାଗରେ ଥରି ଥରି ବାବୁରାମକୁ ପଚାରିଲେ, "ମୂର୍ଖ! ତମେ ବସି ବସି ଚୋରର କୀର୍ତ୍ତି ଦେଖିଲ ଅଥଚ କିଛି କଲନାହିଁ କି ମୋତେ ଡାକିଲ ନାହିଁ !"

ବାବୁରାମ ଚୁପ୍ ରହିଲା ।

"କ'ଣ, ଉତ୍ତର ଦେଉନା କାହିଁକି ? ଚିନ୍ତା କରୁଛ କ'ଣ ?" "ହଜୁର, କାହିଁକି କିଛି କଲି ନାହିଁ, ସେଇଆ ଚିନ୍ତା କରି ଦେଖୁଛି !"

"ଗଧ! ପଳା, ପଳା ମୋ ଆଗରୁ ଏଇକ୍ଷଣି!" ଜମିଦାର ଚିତ୍କାର କରି କହିଲେ । ବାବୁରାମ ଚାଲିଗଲା ।

ଜମିଦାର ବୁଝିଲେ, ଭୁଲ୍ ତାଙ୍କରି । ଗୋଟାଏ ନିର୍ବୋଧକୁ ଚିନ୍ତାଶୀଳ ବୋଲି ଭାବିବା ଓ ନିଜେ କୌଣସି ବିଷୟରେ ଚିନ୍ତା ନ କରିବାଠୁଁ ଭୁଲ୍ କିଛି ନାହିଁ ।






[ ୮ ]

[ଅମରପାଳର ନେତୃତ୍ୱରେ ଦଳେ ସୈନିକ ଯାଇ ଭୟଙ୍କର ପକ୍ଷୀମାନଙ୍କୁ ନିପାତ କଲେ । ପରେ ପରେ ଖବର ମିଳିଲା କି ରାଜକୁମାରୀ କାନ୍ତିମତୀଙ୍କୁ ବ୍ୟାଘ୍ରଚର୍ମଧାରୀ ଲୋକେ ସବାରୀରେ ବସାଇ କୁଆଡ଼େ ଅପସାରଣ କରୁଛନ୍ତି । ସଙ୍ଗେ ସଙ୍ଗେ ଚନ୍ଦ୍ରସେନ ଓ ଉଗ୍ରାକ୍ଷ ଯାଇ ସେମାନଙ୍କ ମୁକାବିଲା କଲେ । ବ୍ୟାଘ୍ରଚର୍ମଧାରୀଙ୍କ ନେତା ରାଜକୁମାରୀଙ୍କୁ ମାରି ପକାଇବା ନିମନ୍ତେ ଲୋକଙ୍କୁ ହୁକୁମ ଦେଲା । ତା'ପରେ...]

ବ୍ୟାଘ୍ରଚର୍ମଧାରୀ ଲୋକଙ୍କ ସର୍ଦ୍ଦାର ତା' ଅନୁଚରମାନଙ୍କୁ ଯେଉଁ ନିର୍ଦ୍ଦେଶ ଦେଲା, ତାହା ଚନ୍ଦ୍ରସେନ ଓ ଉଗ୍ରାକ୍ଷଙ୍କୁ ଖୁବ୍ ଅଡୁଆରେ ପକାଇଲା ଠିକ୍, କିନ୍ତୁ ସେତେବେଳେ ଆଉ ପଛଘୁଞ୍ଚା ଦେବାର ପ୍ରଶ୍ନ ନଥିଲା, ସେମାନେ ଶତ୍ରୁଙ୍କ ଉପରେ ପ୍ରଚଣ୍ଡ ଆକ୍ରମଣ ଆରମ୍ଭ କରିଦେଲେ ।

ଯେତେବେଳେ ଶତ୍ରୁପକ୍ଷର ସର୍ଦ୍ଦାର ବୁଝିଲା ଯେ ବିଜୟର ଆଶା କ୍ଷୀଣ, ସେତେବେଳେ ସେ ତା' ଲୋକଙ୍କୁ ନିର୍ଦ୍ଦେଶ ଦେଲା, "ଆଉ ବିଳମ୍ବ କରି ଲାଭ ନାହିଁ; ରାଜକୁମାରୀଙ୍କୁ ନିଧନ କର ।"

ଶତ୍ରୁପକ୍ଷର ସେ ଘୋଷଣା ଶୁଣି ଚନ୍ଦ୍ରସେନ ଚଟାପଟ ନିଜ କର୍ତ୍ତବ୍ୟ ସ୍ଥିର କରିନେଲେ ।




ଯାହା ହେବାର ହେଉ, ସେ ତତ୍‌କ୍ଷଣାତ୍ ପାଲିଙ୍କି ପାଖରେ ପହଞ୍ଚିବା ଆବଶ୍ୟକ। ସେ ପ୍ରାଣମୂର୍ଚ୍ଛା ତରବାରି ଚାଳନ କରି ପାଲିଙ୍କି ବେଷ୍ଟନ କରି ରହିଥିବା ସୈନ୍ୟମାନଙ୍କୁ ହତ୍ୟାକରି ଅଗ୍ରସର ହେଲେ। ତଥାପି ପାଲିଙ୍କି ପାଖରେ କେତେଜଣ ଶତ୍ରୁ ସୈନ୍ୟ ଥାନ୍ତି ସେମାନେ ପାଲିଙ୍କି ଦ୍ୱାର ଖୋଲିବାକୁ ପ୍ରସ୍ତୁତ ବୋଲି ମନେ ହେଉଥିଲା।

ହଠାତ୍ ପାଲିଙ୍କି ଦ୍ୱାର ଭିତର ପଟରୁ ଖୋଲିଗଲା। ବାହାରି ଆସିଲେ ରାଜକୁମାରୀ କାନ୍ତିମତି। ସେ ତତ୍ପର ଜଣେ ଶତ୍ରୁ ସୈନ୍ୟ ହାତରୁ ତରବାରି ଛଡ଼ାଇ ନେଇ ତାଙ୍କୁ ଧରି ପକାଇବାକୁ ଆସୁଥିବା ଗୋଟିଏ ଲୋକକୁ ସେଥିରେ ଆଘାତ କଲେ। ଲୋକଟା ଚିତ୍କାର କରି ଓଲଟି ପଡ଼ିଲା।

"ସାବାସ୍, ରାଜକୁମାରୀ, ସାବାସ୍!" ଏହା କହି ଉଗ୍ରାକ୍ଷ ତାଙ୍କ ପାଖରେ ଗୋଟିଏ ଲୁଦାରେ ପହଞ୍ଚିଗଲା। ଚନ୍ଦ୍ରସେନ ବି ଦୌଡ଼ି ଆସିଲେ। ରାକ୍ଷସ ଉଗ୍ରାକ୍ଷ କହିଲା, "ରାଜକୁମାରୀ! ମୁଁ ହେଲି ରାକ୍ଷସ ଉଗ୍ରାକ୍ଷ। ଇଏ ହେଲେ ମହାରାଜା ଚନ୍ଦ୍ରସେନ। ଏ ସାରା ବଣର ଅଧିପତି ମୁଁ। ଏଠାରେ ଯେଉଁ ରାକ୍ଷସମାନଙ୍କୁ ଦେଖୁଛ, ସେମାନେ ମୋର ଅନୁଚର। ଆମେ ଠିକ୍ ସମୟରେ ପହଞ୍ଚିପାରି ନଥିଲେ ତମ ଅବସ୍ଥା କ'ଣ ହୋଇଥାନ୍ତା ବୁଝି ପାରୁଛ ତ?"

ରାଜକୁମାରୀ ରାକ୍ଷସ ଆଡ଼େ କ୍ରୋଧଭରା ଦୃଷ୍ଟିରେ ଅନାଇ ତା'ପରେ ପାଲିଙ୍କି ଭିତରେ ଯାଇ ବସିଲେ। ଚନ୍ଦ୍ରସେନଙ୍କ ଆଡ଼କୁ ସେ ଥରେ ମଧ୍ୟ ଦୃଷ୍ଟିପାତ କଲେ ନାହିଁ।

କାନ୍ତିମତିଙ୍କ ଏଭଳି ବ୍ୟବହାର ଚନ୍ଦ୍ରସେନଙ୍କୁ ବହୁତ ଖରାପ ଲାଗିଲା। ସେ ଓ ରାକ୍ଷସ ଉଗ୍ରାକ୍ଷ ନିଜ ଜୀବନକୁ ପାଣି ଛଡ଼ାଇ ତାଙ୍କୁ ରକ୍ଷା କରିବାକୁ ଆସିଲେ। ଅଥଚ ସେ ସେମାନଙ୍କୁ ତାଚ୍ଛଲ୍ୟ କରୁଛନ୍ତି! ସେ ଅପମାନ ବୋଧ କରି ଉଗ୍ରାକ୍ଷକୁ କହିଲେ, "ରାକ୍ଷସ ରାଜ! ଏଥର ଆମ କର୍ତ୍ତବ୍ୟ ପୂରା ହେଲା। ଚାଲ, ଆମ ସୈନ୍ୟମାନଙ୍କୁ ନେଇ ଧବଳଗିରି ଉଦ୍ଦେଶ୍ୟରେ ପ୍ରସ୍ଥାନ କରିବା।"

ଉଗ୍ରାକ୍ଷ ଏହା ଶୁଣି ବିସ୍ମିତ ସ୍ୱରରେ ଚନ୍ଦ୍ରସେନଙ୍କ ଆଡ଼େ ଅନାଇଲା । ପୂର୍ବ ଯୋଜନା ଅନୁସାରେ ସେମାନେ ପ୍ରଥମେ କପିଳପୁର ଦୁର୍ଗ ଘେରାଉ କରିବାକୁ ଯିବା କଥା । ସେ ଦିଗରେ ଆଗତୁରା କିଛି କରିବା ନିମନ୍ତେ ଅମରପାଳ କିଛି ସୈନ୍ୟ ଧରି ଯାଇଛି । ପ୍ରଥମେ ସେଠାକୁ ଯାଇ ରାଜଦ୍ରୋହୀ ନାଗବର୍ମାକୁ ଦମନ କରିବା କଥା । ଅଥଚ ଚନ୍ଦ୍ରସେନ ଧବଳଗିରି ଯିବାକୁ କପରି ବାହାରି ପଡ଼ୁଛନ୍ତି ?




ସେ ପଚାରିଲା, "ଚନ୍ଦ୍ରସେନ ! ଆମେ ପରା ପ୍ରଥମେ କପିଳପୁର ଦୁର୍ଗ ଅଧିକାର କରିବାକୁ ଯିବା କଥା ? ବାଟ ମଝିରେ ରାଜକୁମାରୀଙ୍କ ବିପଦ କଥା ଶୁଣି ସିନା ଆମେ ଅଟକି ଯାଇ ଏଠାକୁ ଆସିଲୁଁ ! ଏହା ଭିତରେ ଆମ ପୂର୍ବ ଯୋଜନାରେ ପରିବର୍ତ୍ତନ ଆଣିବା ସକାଶେ କୌଣସି କାରଣ ତ ଉପସ୍ଥିତ ହୋଇ ନାହିଁ ! ତମେ ଥରେ ଯାହା ସ୍ଥିର କର, ସେଥିରେ ଅଟଳ ରୁହ ବୋଲି ମୁଁ ଜାଣେ । ସିଦ୍ଧାନ୍ତ ବଦଳାଇବାର କାରଣ କ'ଣ କହିବ କି ?"

"ଉଗ୍ରାକ୍ଷ ! ତମେ କହୁଛ ଆମେ ରାଜକୁମାରୀଙ୍କୁ ରକ୍ଷା କଲୁଁ । କିନ୍ତୁ ରାଜକୁମାରୀ ଏପରି ବ୍ୟବହାର କରୁଛନ୍ତି, ଯାହା ଦେଖିଲେ ମନେ ହେବ ସତେ ଅବା ସେ ଆମକୁ ରକ୍ଷା କଲେ ! ଅମରପାଳ ଆମକୁ କହିଥିଲା କି ଅଗ୍ନିଦ୍ୱୀପର ଲୋକଙ୍କ ସହ ମିତ୍ରତା କରି ନାଗବର୍ମା ମହାରାଜା ବୀରସିଂହଙ୍କୁ ବନ୍ଦୀକରି ବହ୍ନିଦ୍ୱୀପକୁ ପଠାଇ ଦେଇଛି । ବର୍ତ୍ତମାନ ଆମେ ଯୁଦ୍ଧ କରି କପିଳପୁର ଉଦ୍ଧାର କଲେ ମଧ୍ୟ ସେଠାରେ କାହାକୁ ଗାଦିରେ ବସାଇବା ?" ଚନ୍ଦ୍ରସେନ କ୍ରୋଧଭରା କଣ୍ଠରେ ପଚାରିଲେ ।

ଚନ୍ଦ୍ରସେନଙ୍କ କଥା ଶୁଣି ରାଜକୁମାରୀ କାନ୍ତିମତୀ ପୁନର୍ବାର ପାଲିଙ୍କି ଭିତରୁ ବାହାରି ଆସିଲେ ଓ ଚନ୍ଦ୍ରସେନଙ୍କ ଆଡ଼େ ଆତଙ୍କିତ ସ୍ୱରରେ ଅନାଇ ପଚାରିଲେ, "ମୋ ପିତାଙ୍କୁ ବନ୍ଦୀ କରି ବହ୍ନିଦ୍ୱୀପକୁ ପଠାଇ ଦିଆଯାଇଛି ବୋଲି ଖବର ଦେଇଥିବା ଅମରପାଳ ଲୋକଟି କିଏ ?"




"ଅମରପାଳ ହେଉଛି କପିଳପୁରର ବାସିନ୍ଦା । ସେ ନାଗବର୍ମାର ସୈନ୍ୟଦଳରେ ବାଧ୍ୟ ହୋଇ ଯୋଗ ଦେଇଥିଲା । ଘଟଣାକ୍ରମେ ସେ ଆମ ଦ୍ୱାରା ବନ୍ଦୀ ହେଲା । ସେହି ଦିନଠୁ ସେ ଆମ୍ଭର ବହୁତ ଉପକାର କରୁଛି ।" ଚନ୍ଦସେନ ଉତ୍ତର ଦେଲେ ।

ଉତ୍ତେଜିତ କଣ୍ଠରେ ରାଜକୁମାରୀ କହିଲେ, "ଏହା ସତ୍ୟ ନୁହେଁ । ସେ ପ୍ରକୃତ କଥା ଜାଣେ ନାହିଁ । ମୋ ବାପାଙ୍କୁ ଆମ ଦୁର୍ଗର କୌଣସି ଭୂଗର୍ଭ ଗୃହରେ ହୁଏତ ବନ୍ଦୀ ଭାବରେ ରଖା ହୋଇଛି । ଦୁର୍ଗ ଭିତରୁ ତାଙ୍କୁ ନେଇ ଚାଲିଯିବା କ'ଣ ସହଜ ? ତାଙ୍କ ବିଷୟରେ ଏଭଳି ଅପପ୍ରଚାର ହେବା ଉଚିତ ନୁହେଁ ।"

"ଓ, ଏପରି କଥା !" ଚନ୍ଦସେନ ମନ୍ତବ୍ୟ ଦେଲେ ।

"ଚନ୍ଦସେନ ! ଆମେ ମହାରାଜଙ୍କୁ ରକ୍ଷା କରିବା ନିମନ୍ତେ ଯିବା ଚାଲ । ବିଳମ୍ବ କଲେ ଚଳିବ ନାହିଁ ।" ଉଗ୍ରାକ୍ଷ କହିଲା ।

"ଉଗ୍ରାକ୍ଷ ! ଆମକୁ ତ କେହି ସାହାଯ୍ୟ କରିବାକୁ ଡାକି ନାହାଁନ୍ତି ! ଆମେ ଜୀବନ ବିପନ୍ନ କରି କାହିଁକି ଲଢ଼ିବାକୁ ଯିବା କହିଲ ? ବହୁତ ହେଲାଣି । ଆଉ ସେସବୁ ଅନାବଶ୍ୟକ କାମ କରିବାର ଦରକାର ନାହିଁ । ଚାଲ, ଆମେ ଆମ ନିଜ କାମରେ ଯିବା ।" ଚନ୍ଦସେନ ବିରକ୍ତ ଭାବରେ କହିଲେ ।

କାନ୍ତିମତୀ କଣ୍ଠସ୍ୱର ନରମ କରି କହିଲେ, "ମୋ ପିତାଙ୍କ ସହାୟତା କରିବାକୁ ଯିବା ନିମନ୍ତେ ମୁଁ ଆପଣଙ୍କୁ ନିବେଦନ କରୁଛି । ମୋ ମିଜାଜ୍ ଠିକ୍ ନଥିଲା । ବିଚଳିତ ଅବସ୍ଥାରେ ଥିବାବେଳେ କ'ଣ କହି ଦେଇଛି, ଜାଣି ନାହିଁ । ମୋ ଦୋଷ ଧରନ୍ତୁ ନାହିଁ ।"

ଚନ୍ଦସେନ ଗମ୍ଭୀର ଭାବରେ କହିଲେ, "ଟିକିଏ ପୂର୍ବରୁ ଆପଣଙ୍କ କଥାବାର୍ତ୍ତାର ଢଙ୍ଗ ଭିନ୍ନ ଥିଲା । ସତେ ଅବା ଆପଣ ମୋର ଖାଉନ୍ଦ ! ଶୁଣନ୍ତୁ, ଭଦ୍ରୋଚିତ ବ୍ୟବହାର କରିବା ଉଚିତ । ଆଗରେ ଏଇ ଯେଉଁ ପ୍ରସାଦ ଦେଖାଯାଉଛି, ତାହା ମୋର । ଆପଣ ଯେଉଁ ସ୍ଥାନରେ ଠିଆ ହୋଇଛନ୍ତି, ତାହା ମୋ ଇଲାକାର ଅନ୍ତର୍ଭୁକ୍ତ ।"

ରାଜକୁମାରୀଙ୍କ ମୁହଁରେ ହସ ଫୁଟି ଉଠିଲା । ସେ କହିଲେ, "ସତେ ? ଟିକଏ ଆଗରୁ ରାକ୍ଷସ ଉଗ୍ରାକ୍ଷ କିନ୍ତୁ କହିଲେ କି ଏ ବଣର ଅଧିକାରୀ ହେଉଛନ୍ତି ସିଏ ।"

ଚନ୍ଦସେନ ଉଗ୍ରାକ୍ଷ ଆଡ଼େ ଅନାଇଲେ । ଉଗ୍ରାକ୍ଷ ଦୋଦୋପାଞ୍ଚ ହୋଇ କହିଲା, "ବାସ୍ତବିକ ଏ ବଣ ମୋର ଅଧୀନ । କିନ୍ତୁ ମୁଁ ରାଜା ଚନ୍ଦସେନଙ୍କ ଅନୁଚର । ତେଣୁ ଏ ବଣ ତାଙ୍କର ।"

"ବର୍ତ୍ତମାନ ମୋର ସଂଶୟ ଦୂର ହେଲା । ମୁଁ କପିଳପୁରର ରାଜା ବୀରସିଂହଙ୍କ ଏକମାତ୍ର କନ୍ୟା କାନ୍ତିମତି ଚନ୍ଦନଗରର ରାଜା ଚନ୍ଦସେନଙ୍କ ସହାୟତା ମାଗୁଛି । ରାଜଦ୍ରୋହୀ ନାଗବର୍ମା ଦ୍ୱାରା ବନ୍ଦୀ ହୋଇଥିବା ମହାରାଜା ବୀରସିଂହଙ୍କୁ ମୁକ୍ତ କରନ୍ତୁ ଓ ରାଜଦ୍ରୋହୀକୁ ଉପଯୁକ୍ତ ଦଣ୍ଡ ଦିଅନ୍ତୁ । ଆପଣଙ୍କ ପାଖରେ ଏହାହିଁ ମୋର ନିବେଦନ ।" କାନ୍ତିମତି ନମ୍ର ସ୍ୱରରେ କହିଲେ ।

ଚନ୍ଦସେନଙ୍କ ମୁହଁରେ ହସ ଫୁଟି ଉଠିଲା । ସେ ଉଗ୍ରାକ୍ଷ ଆଡ଼େ ଅନାଇ କହିଲେ, "ରାକ୍ଷସ ! ତମେ ନଜାଣ ନଚିନ୍ତ କଥା କହିବାର ଫଳ କିପରି ଅଡୁଆ ସୃଷ୍ଟି କରିପାରେ, ସେକଥା ଏଥର ବୁଝିଲ ତ ? ଏ ବଣ ତମର ବୋଲି ଏଣିକି କହିବ ନାହିଁ । କହିବ ଏସବୁ ଅଞ୍ଚଳ ମହାରାଜା ଚନ୍ଦସେନଙ୍କର । ବୁଝୁଛ ତ ?"



"ହଁ, ହଁ, ବୁଝିଗଲି । ମୁଁ ହେଲି ଆପଣଙ୍କର ସେବକ ।" ଏହା କହି ରାକ୍ଷସ କାନ୍ତିମତିଙ୍କୁ ନମସ୍କାର କଲା ।

କାନ୍ତିମତି ହସିଲେ । ଚନ୍ଦସେନ ଅନୁଚରମାନଙ୍କ ଆଡ଼େ ଅନାଇ କହିଲେ, "ଚାଲ ଏଥର ଆମେ କପିଳପୁର ଅଭିମୁଖେ ଯାତ୍ରା କରିବା । ପ୍ରସ୍ତୁତ ହୁଅ ।"

ତା'ପରେ ସେ ରାଜକୁମାରୀଙ୍କୁ କହିଲେ, "ଆପଣ ପାଲିଙ୍କିରେ ବସି ଯାଆନ୍ତୁ ।" ସେ ନିଜ ସେବକମାନଙ୍କ ଭିତରୁ କେତେଜଣଙ୍କୁ ପାଲିଙ୍କି ଉଠାଇବାକୁ ନିର୍ଦ୍ଦେଶ ଦେଲେ ।

କାନ୍ତିମତି ତାଙ୍କୁ କହିଲେ, "ମହାରାଜ, ମୁଁ କ'ଣ ବର୍ତ୍ତମାନ ସୁଦ୍ଧା ବନ୍ଦୀ? ଯଦି ମୁଁ



ଧାରଣ କରିବା ଦରକାର ନାହିଁ । ଯୁଦ୍ଧ ଆମେ କରିବା ।"

ଅଳ୍ପ ସମୟ ଭିତରେ ରାକ୍ଷସମାନେ ଉଗ୍ରାକ୍ଷ ପଛେ ପଛେ ଓ ଶତ୍ରସେନଙ୍କ ସୈନ୍ୟମାନେ ଶତ୍ରସେନ ଓ କାନ୍ତିମତଙ୍କ ପଛେ ପଛେ ଅଗ୍ରସର ହେବାକୁ ଲାଗିଲେ । ପ୍ରାୟ ଏକଘଣ୍ଟା ଯାତ୍ରା କରିବା ପରେ ସେମାନେ ଅଦୂରରେ କପିଳପୁର ଦୁର୍ଗ ଦେଖି ପାରିଲେ । ଦୁର୍ଗର ଶିଖର ଉପରେ ଶତ୍ରୁ ପକ୍ଷର ପତାକା ଉଡୁଥିଲା । ଦୁର୍ଗ ଆଗରେ ଦୁଇଟି ଭୟଙ୍କର ପକ୍ଷୀ ପ୍ରହରୀ ଭଳି ରହିଥିବାର ମଧ୍ୟ ଦେଖାଗଲା ।

ସେ ଭୟଙ୍କର ପକ୍ଷୀଙ୍କୁ ଦେଖି ଶତ୍ରସେନ ଓ ଉଗ୍ରାକ୍ଷ ବିସ୍ମିତ ହେଲେ । ଉଗ୍ରାକ୍ଷ ଶତ୍ରସେନଙ୍କୁ ପଚାରିଲା, "ଆମର ଅମରପାଳ କୁଆଡ଼େ ଗଲା ? ଶତ୍ରୁ ହାତୁଡ଼ରେ ପଡ଼ି ସେ ବିଚରା ତା' ସହ ଆସିଥିବା ସୈନିକଙ୍କ ସମେତ ପ୍ରାଣ ଦେଇ ନାହିଁ ତ ? ଏଠିକି ସେ ଭୟଙ୍କର ପକ୍ଷୀଙ୍କର ଗୋଟାଏ ଛାଉଣୀ ରହିଛି । ବର୍ତ୍ତମାନ ଆମର କର୍ତ୍ତବ୍ୟ କ'ଣ ?"

ଶତ୍ରସେନ ଚିନ୍ତିତ ଭାବରେ ଦୁର୍ଗ ଆଡ଼େ ଅନାଇ ରହିଲେ । ଅମରପାଳ ଦୁର୍ଗର କେଉଁଠାରେ ଲୁଚି ଛପି ରହିଛି । ଯେତେବେଳେ ସେ ବୁଝିଥିବ କି ଅଳ୍ପ ସୈନ୍ୟଙ୍କୁ ଧରି ଦୁର୍ଗ ଆକ୍ରମଣ କରିବା ସମ୍ଭବ ନୁହେଁ; ସେତେବେଳେ ସେ ସୁଯୋଗକୁ ଅପେକ୍ଷା କରି ରହିବା ଉଚିତ ହେବ ବୋଲି ମନେ କରିଥିବ ।

ମୁକ୍ତ, ତେବେ ପାଲିଙ୍କିରେ ବସିବାକୁ ମୋତେ କୁହନ୍ତୁ ନାହିଁ । ମୁଁ ଘୋଡ଼ା ଚଢ଼ି ଆପଣଙ୍କ ସାଥେ ସାଥେ ଯିବି ।"

ଉଗ୍ରାକ୍ଷ ଖୁସି ହୋଇ କହିଲା, "ଠିକ୍, ଠିକ୍ । ସେଇଆ କଲେ ଭଲ ହେବ । ରାଜକୁମାରୀଙ୍କ ସାହସ ଓ ବୀରତ୍ୱ କମ୍ ନୁହେଁ । ଟିକିଏ ଆଗରୁ ସେ କେମିତି ଅବଲୀଳା କ୍ରମେ ଜଣେ ଶତ୍ରୁ ସୈନ୍ୟକୁ ଖତମ୍ କରିଦେଲେ !"

ଶତ୍ରସେନ କହିଲେ, "ବେଶ୍ । ଘୋଡ଼ା ଚଢ଼ି ଆମ ସହ ଚାଲନ୍ତୁ, ଆପତ୍ତି ନାହିଁ । ତେବେ କପିଳପୁର ଦୁର୍ଗ ଅଧିକାର କରିବା ଓ ମହାରାଜା ବୀରସିଂହଙ୍କୁ ମୁକ୍ତ କରିବା ଦାୟିତ୍ୱ ଆମର । ଆପଣ ସେଠାରେ ଅସ୍ତ୍ର-

ବର୍ତ୍ତମାନ ସମସ୍ୟା ହେଲା, ସେ କେଉଁଠାରେ କିଭଳି ଅବସ୍ଥାରେ ରହିଛି, ତାହା କିପରି ଜାଣି ହେବ ?

ଚନ୍ଦ୍ରସେନ ଏହି ପ୍ରଶ୍ନ ଉପରେ ଚିନ୍ତା କରୁଛନ୍ତି, ବଣ ଭିତରେ କିଛି ଶବ୍ଦ ଶୁଭିଲା । ସେ ଚମକି ପଡ଼ି ଅନାଇବା ବେଳକୁ ଅମରପାଳ ଘୋଡ଼ା ଚଢ଼ି ଆସୁଛି । ପାଖକୁ ଆସି ସେ କହିଲା, "ମହାରାଜ, ନାଗବର୍ମା ଧବଳଗିରି ଆକ୍ରମଣ କରିବାକୁ ଯାଇଛି । କିନ୍ତୁ ଏଠାରେ ସେ ଏ ଦୁଇ ଭୟଙ୍କର ପକ୍ଷୀଙ୍କୁ ପ୍ରହରୀ ଭଳି ରଖିଦେଇ ଯାଇଛି । ଦୁର୍ଗରେ ବିଶେଷ ସଂଖ୍ୟାରେ ଶତ୍ରୁ ସୈନ୍ୟ ଅଛନ୍ତି ବୋଲି ମନେ ହୁଏନା । ଏ ଦୁଇଟିକୁ ଛାଡ଼ିଦେଲେ ଆଉ ପକ୍ଷୀ ବି ନାହାନ୍ତି । ତଥାପି ମୋର ଅଳ୍ପ ସୈନ୍ୟଙ୍କୁ ଧରି ଦୁର୍ଗ ଆକ୍ରମଣ କରିବା ସମ୍ଭବ ହୋଇ ନଥାନ୍ତା । ତେଣୁ ଆପଣଙ୍କୁ ଅପେକ୍ଷା କରିଥିଲି ।"

"ଭଲ କରିଛ । ତମେ ଆଗରୁ ହାମ୍‌ଲା କରିଥିଲେ ଅକାରଣରେ ସବୁ ସୈନିକ ମରିଥାନ୍ତେ । ଆଉ କିଛି ଲାଭ ହୋଇ ନଥାନ୍ତା ।" ଚନ୍ଦ୍ରସେନ ଅମରପାଳକୁ ଏତିକି କହି ଉଗ୍ରାକ୍ଷକୁ କହିଲେ, "ରାକ୍ଷସବର ! ଦୁର୍ଗର କବାଟ ଭାଙ୍ଗି ଭିତରେ ପଶିବାକୁ ପଡ଼ିବ । ତମ ରାକ୍ଷସ ଅନୁଚରମାନେ ଏ କାମ କରିପାରିବେ ନିଶ୍ଚୟ !"

ଉଗ୍ରାକ୍ଷ କହିଲା, "ହଁ, ତାହା ପାରିବେ । କିନ୍ତୁ ଏ ଭୟଙ୍କର ପକ୍ଷୀଙ୍କୁ ସାମ୍ନା କରିବେ କିପରି ?"

"ଚିନ୍ତା କରନାହିଁ । ଏ ପକ୍ଷୀମାନେ ନିଆଁ ଦେଖିଲେ ଛନିଆ ହୋଇଯାନ୍ତି ବୋଲି ମୁଁ ଲକ୍ଷ୍ୟ କରିଛି । ଆମ ଲୋକେ ମଶାଲ ଧରି ଏମାନଙ୍କୁ ସାମ୍ନା କଲେ ପକ୍ଷୀମାନେ ସେମାନଙ୍କ ଉପରେ ସବାର୍ ହୋଇଥିବା ଶତ୍ରୁପକ୍ଷର ସୈନିକଙ୍କ ନିର୍ଦ୍ଦେଶ ମୁତାବକ କାମ କରିବେ ନାହିଁ ବୋଲି ମୋର ଧାରଣା ।" କହିଲା ଅମରପାଳ ।

(କ୍ରମଶଃ)






# ପିତା ଓ ପୁତ୍ର

ନିଶା ଗରଜୁଥାଏ । ତୁହାକୁ ତୁହା ଶୀତଳ ପବନ ସାଙ୍ଗକୁ ମଧ୍ୟେ ମଧ୍ୟେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୂର୍ତ୍ତିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତା'ପରେ ତାକୁ କାନ୍ଧରେ ପକାଇ ସେ ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ ତାଙ୍କୁ କହିଲା, "ରାଜା! ତୁମକୁ କିଏ ଏ ଦୁଃସାହସିକ କାମରେ ପ୍ରେରିତ କରିଛି, ଜାଣେନା । ସିଏ ତୁମର ଶୁଭକାଂକ୍ଷୀ କି ନୁହେଁ, ତାହା ବି ମୁଁ

## ବେତାଳ କଥା



ଜାଣେନା । ସିଏ ଶୁଭାକାଂକ୍ଷୀ, ସିଏ ଯେ ସର୍ବଦା ଉପଯୁକ୍ତ ପରାମର୍ଶ ଦେଉଥିବ, ସେକଥା କହିବା ସମ୍ଭବପର ନୁହେଁ । ଏ ସମ୍ପର୍କରେ ତମକୁ ଗୋଟାଏ ଉଦାହରଣ ଦେଉଛି । ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ କହିଲା : ଧବଳଗିରି ଗ୍ରାମରେ ଜଣେ କୃଷକ ଥିଲେ । ତାଙ୍କ ନାମ ପ୍ରସନ୍ନ । ତାଙ୍କର ବେଶ୍ କିଛି ଜମିବାଡ଼ି ଥିଲା । ସେଥିରେ ସେ ଖୁବ୍ ସ୍ୱଚ୍ଛଳ ଭାବରେ ଚଳୁଥିଲେ । ଅବଶ୍ୟ ଜମିବାଡ଼ିର ସେ ଯେପରି ଯତ୍ନ ନେଉଥିଲେ, ଜମିବାଡ଼ିକୁ ଉର୍ବର କରିବା ଦିଗରେ ସେ ଯେପରି ପରିଶ୍ରମ କରୁଥିଲେ, ତାହା ଅନ୍ୟ କୃଷକମାନଙ୍କ ପାଇଁ ଉଜ୍ଜ୍ୱଳ ଦୃଷ୍ଟାନ୍ତ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ଭାବୁଥିଲେ ଅନ୍ୟ ହାତରେ ଜମି ଛାଡ଼ିଦେଲେ ତାହା ଜମି ପ୍ରତି ଅପମାନ ହେବ ।

ତାଙ୍କର ଥିଲେ ଦୁଇ ପୁଅ । ଜୀତେନ୍ଦ୍ର ଓ ସମରେନ୍ଦ୍ର । ଜୀତେନ୍ଦ୍ର ପିଲାବେଳରୁ ବାପା ସହ ବିଲକୁ ଯାଉଥାଏ । ଗଛଲତା ଫସଲ ଇତ୍ୟାଦି ଭିତରେ ଆନନ୍ଦରେ ଖେଳବୁଲ କରୁଥାଏ । ପ୍ରସନ୍ନ ତାକୁ ଗୃହାଳରେ ଛାଡ଼ିଲେ । ଗୃହାଳ ଶେଷ ହେବା ମାତ୍ରେ ଜୀତେନ୍ଦ୍ର କ୍ଷେତ ବିଲକୁ ପଳାଇ ଆସୁଥାଏ ।

ପାଞ୍ଚବର୍ଷରେ ତା' ପାଠ ପଢ଼ା ଶେଷ ହେଲା । ସେ ତେଣିକି ପୁରା ସମୟ ଦେଇ ବାପାକୁ ସାହାଯ୍ୟ କଲା । ଫଳରେ ଜମିବାଡ଼ିରେ ଆହୁରି ଉନ୍ନତି ହେଲା । ଫସଲ ଆହୁରି ଭଲ ହେଲା । ପ୍ରସନ୍ନ ଖୁସି ହେଲେ । ସାନ ପୁଅ କେବେ କାମ କରିବାକୁ ସକ୍ଷମ ହେବ, ସେ ସେଦିନକୁ ଅପେକ୍ଷା କଲେ ।

ସମରେନ୍ଦ୍ର ବି ଗୃହାଳରେ ପାଠ ପଢ଼ା ଶେଷ କଲା ଓ ପିତାଙ୍କ ନିର୍ଦ୍ଦେଶରେ ଜମିକୁ ଗଲା । କିନ୍ତୁ ସେଠାରେ ସେ ବେଳ ପାଇଲେ ବସି ରହି ଗଛଲତାର ଛବି ଆଙ୍କେ କିମ୍ବା ଟାଣ ମାଟି ସଂଗ୍ରହ କରି ସେଥିରେ ପିତୁଳା ଗଢ଼େ । ପୁଅ ଏପରି ଭାବରେ ସମୟ ନଷ୍ଟ କରୁଛି ଦେଖି ପ୍ରସନ୍ନ ବିରକ୍ତ ହୁଅନ୍ତି, କିନ୍ତୁ ସେ ମୁହଁ ଖୋଲି ସମରେନ୍ଦ୍ରକୁ କିଛି କହନ୍ତି

ନାହିଁ । ସେ ଧୈର୍ଯ୍ୟ ଧରି ତାଙ୍କୁ ଗୃଷବାସର ମହତ୍ତ୍ୱ ଓ ସେ ଦିଗରେ କୃଷକର କର୍ତ୍ତବ୍ୟ ବୁଝାନ୍ତି ।

କିଛି ବର୍ଷ ପରେ ହଠାତ୍ ଦିନେ ସମରେନ୍ଦ୍ର ବାପାଙ୍କୁ କହିଲା, "ବାପା! ମୁଁ ସହରକୁ ଯାଇ ବେପାର କରିବି ।"

"ବେପାର ? ଆମ ସାତ ପୁରୁଷରେ କେହି ବେପାର କରି ନାହାନ୍ତି । ବେପାର ଆମ ଦ୍ୱାରା ହେବ ନାହିଁ ପୁଅ!" ପ୍ରସନ୍ନ ନରମ ଭାବରେ ତାଙ୍କୁ ବୁଝାଇବାକୁ ଚେଷ୍ଟା କଲେ ।

କିନ୍ତୁ ସମରେନ୍ଦ୍ର କହିଲା, "ବାପା! ସହରରେ ଥିବା ଲଲ୍ଲ ଶେଠ ଆପଣଙ୍କର ବନ୍ଧୁ । ସେ ବିଶିଷ୍ଟ ବ୍ୟବସାୟୀ । ଆପଣ କହିଲେ ସେ ମୋତେ ସାହାଯ୍ୟ କରିବେ ।"

ପ୍ରସନ୍ନ ବିରକ୍ତ ହୋଇ କହିଲେ, "ତୋ ଉପରେ ଆଶା କରି ମୁଁ ଆମ ଜମିକୁ ଲଗିଥିବା ଡୋଙ୍ଗା କିଣିବାର ବ୍ୟବସ୍ଥା କରୁଛି । ତୁ ବେପାର କରିବାକୁ ବାହାରି ପଡ଼ିଲୁ କପରି ? ସେକଥା ଭୁଲିଯାଇ ଗୃଷରେ ମନ ଦେ । ମୁଁ ଲଲ୍ଲ ଶେଠକୁ କିଛି ଅନୁରୋଧ କରିବି ନାହିଁ ।"

ସମରେନ୍ଦ୍ର କହିଲା, "ବାପା, ଯଦି ଲଲ୍ଲ ଶେଠଙ୍କୁ ମୋ ବିଷୟରେ ନ କହିବେ, ତେବେ ମୋତେ କିଛି ମୂଳଧନ ଦିଅନ୍ତୁ । ମୁଁ ନିଜେ ଯାହା କରିବାର କରିବି ।"

ପ୍ରସନ୍ନ ରାଗିଗଲେ । ବାପ ପୁଅ ଭିତରେ କଥାବାର୍ତ୍ତା କ୍ରମେ କଡ଼ା ହେଲା । ସମରେନ୍ଦ୍ର ପୈତୃକ ସମ୍ପତ୍ତିରୁ ତା' ଭାଗ ଦାବୀ କରିବା ଯାଏ କଥା ଗଲା । ସମସ୍ତେ ତା'ର ଏଭଳି





ମନୋଭାବକୁ ଔଚିତ୍ୟ ବୋଲି କହି ତାକୁ ସତ୍ ପଥକୁ ଆଣିବାକୁ ଚେଷ୍ଟା କଲେ । ଫଳ କିଛି ହେଲା ନାହିଁ । ଶେଷକୁ ପଞ୍ଚାୟତ ବସିଲା । ସେଥିରେ ନିଷ୍ପତ୍ତି ହେଲା, ସମରେନ୍ଦ୍ର ପ୍ରସନ୍ନଙ୍କଠୁଁ କିଛି ମୂଳଧନ ନେଇ ସହରକୁ ଯାଇ ବେପାର କରିବ । କିନ୍ତୁ ବର୍ଷକ ଭିତରେ ସେ ବେପାରରେ ସୁଫଳ ନ ଦେଖାଇଲେ ବେପାର ଛାଡ଼ି ଆସି ଚାଷରେ ଯୋଗ ଦେବ ।

ସମରେନ୍ଦ୍ର ଖୁସି ହେଲା । ଟଙ୍କା ଧରି ସେ ସହରକୁ ଚାଲିଗଲା ବେଳେ ବାପା ବୋଉଙ୍କୁ ପ୍ରଣାମ କରିଗଲା । ବୋଉ ଆଶୀର୍ବାଦ କଲେ । ବାପା କିଛି କହିଲେ ନାହିଁ । କିନ୍ତୁ ବେପାରରେ ଅଭିଜ୍ଞତା ନଥିବାରୁ ସେ ଛଅମାସ ଭିତରେ ସବୁ ମୂଳଧନ ହରାଇଲା । ହତାଶ ହୋଇ ସେ ଜୁଆଖେଳ ଟଙ୍କା ଉଠାଇବାକୁ ଚେଷ୍ଟା କଲା । ସେଥିରେ ଦୁର୍ଦ୍ଦଶା ଆହୁରି ବଢ଼ିଗଲା । ସେ ନିଜର ଦୁଃଖ ଭୁଲିବା ନିମନ୍ତେ ମଦ ପିଇବାକୁ ଆରମ୍ଭ କଲା । ଅସୁସ୍ଥ ଅବସ୍ଥାରେ ତାକୁ ତା'ର କେତେଜଣ ବନ୍ଧୁ ଘରକୁ ନେଇ ଆସିଲେ । ଘରେ ଆସି ସେ ସୁସ୍ଥ ହେଲା ଓ ସର୍ତ୍ତ ଅନୁସାରେ ଜମିଜମା କାମରେ ଯୋଗ ଦେଲା । କିନ୍ତୁ ସେଥିରେ ସେ କୌଣସି ଉତ୍ସାହ ଅନୁଭବ କରୁ ନଥାଏ । ତା' ଦେହ ବି ପୁରାପୁରି ସୁସ୍ଥ ହେଲା ନାହିଁ ।

ହଠାତ୍ ଦିନେ ପ୍ରସନ୍ନ, ବଡ଼ପୁଅ ଜୀତେନ୍ଦ୍ର ଓ ସାନପୁଅ ସମରେନ୍ଦ୍ରକୁ ପାଖକୁ ଡାକି କହିଲେ, "ଜୀତେନ୍ଦ୍ର, ମୁଁ ଦେଖୁଛି ତୁ ବର୍ତ୍ତମାନ ଏକା ଚାଷବାସ ବେଶ୍ ଭଲଭାବରେ ଦେଖି ପାରୁଛୁ । ମୁଁ ତୋ ଉପରେ ଦାୟିତ୍ୱ ଦେଇ କିଛିଦିନ ପାଇଁ ସହରକୁ ଯିବି । ସମରେନ୍ଦ୍ର ସହ ବେପାର କରିବି ।"

ଜୀତେନ୍ଦ୍ର ଓ ସମରେନ୍ଦ୍ରଙ୍କ ବିସ୍ମୟର ସୀମା ରହିଲା ନାହିଁ । ଜୀତେନ୍ଦ୍ର କହିଲା, "ବାପା! ଆପଣଙ୍କର ଯେପରି ଇଚ୍ଛା!" ସମରେନ୍ଦ୍ରକୁ ନେଇ ପ୍ରସନ୍ନ ସହର ଅଭିମୁଖେ ବାହାରିଲେ ।

ବେତାଳ ଟିକିଏ ଚୁପ୍ ରହି ହଠାତ୍ ତୀବ୍ର କଣ୍ଠରେ ପ୍ରଶ୍ନ କଲା, "ରାଜା! ପ୍ରସନ୍ନଙ୍କ ବ୍ୟବହାର ବିଚିତ୍ର ନୁହେଁ କି? ସମରେନ୍ଦ୍ର ଖାଲି ଯେ ତାଙ୍କ ପ୍ରତି ଅସୌଜନ୍ୟମୂଳକ

ଆଚରଣ କରିଥିଲା ତାହା ନୁହେଁ, ସେ ବେପାରରେ ମଧ୍ୟ ନିଜ ଅଯୋଗ୍ୟତା ପ୍ରମାଣ କଲା । ତା' ସହ ମିଶି ବେପାର କରିବାକୁ ପ୍ରସନ୍ନ ବାହାରି ପଡିଲେ କିପରି ? ପୁଣି ପ୍ରସନ୍ନ ନିଜେ କହୁଥିଲେ କି ତାଙ୍କ ସାତ ପୁରୁଷରେ କେହି ବେପାର କରି ନାହାନ୍ତି । ସେକଥା ସେ ଭୁଲିଗଲେ କିପରି ? ରାଜା ! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନିରୁତ୍ତର ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ଖୁବ୍ ଭଲ ମଣିଷମାନେ ମଧ୍ୟ ଥରେ ଥରେ ଅବିବେକୀ କାର୍ଯ୍ୟ କରିଥାନ୍ତି । ପ୍ରସନ୍ନ ପ୍ରଥମେ ତାହାହିଁ କରିଥିଲେ । ପ୍ରତ୍ୟେକ ମଣିଷର ପ୍ରବୃତ୍ତି ଓ ବିକାଶର ଧାରା ସ୍ୱତନ୍ତ୍ର । ଯେହେତୁ ଜୀତେନ୍ଦ୍ର କୃଷି ପ୍ରତି ଆଗ୍ରହୀ ଥିଲା, ତେଣୁ ସମରେନ୍ଦ୍ର ବି ସେହିପରି ଆଗ୍ରହୀ ହେବ, ଏପରି ଭାବିବା ତାଙ୍କ ପକ୍ଷରେ ଭୁଲ ହୋଇଛି । ପ୍ରଥମେ ସମରେନ୍ଦ୍ର ଛବି ଆଙ୍କିବା ଓ ମୂର୍ତ୍ତି ଗଢ଼ିବାରେ ଆଗ୍ରହ ପ୍ରକାଶ କରିଥିଲା । ପ୍ରସନ୍ନ ତାଙ୍କୁ ଜଣେ ଶିଳ୍ପୀ ହେବାର ସୁଯୋଗ ଦେବା ଉଚିତ ଥିଲା । ସେ କିନ୍ତୁ ସେ କଥା ଲକ୍ଷ୍ୟ କଲେ ନାହିଁ । ଦ୍ୱିତୀୟରେ, ଯେତେବେଳେ ସମରେନ୍ଦ୍ର ବେପାର କରିବାକୁ ବାହାରିଲା, ପ୍ରସନ୍ନ ସେତେବେଳେ ନିଜ ଜିଦ ଯୋଗୁଁ ତାଙ୍କ ବନ୍ଧୁ ବେପାରୀମାନଙ୍କ ସହ ତା'ର ପରିଚୟ କରାଇଦେଲେ ନାହିଁ । ଅଭିଜ୍ଞତା ଅଭାବରୁ ସମରେନ୍ଦ୍ର ବେପାରରେ ଅସଫଳ ହେଲା । ହତାଶା ଯୋଗୁଁ ସେ ଅସୁସ୍ଥ ହେଲା । କ୍ରମେ ପ୍ରସନ୍ନ ଏସବୁ ବୁଝିପାରିଲେ । ନିଜ ପୁଅର ବିକାଶ ଓ ମଙ୍ଗଳ ପାଇଁ ସେ ପରିଣତ ବୟସରେ ବେପାର କରିବାକୁ ବାହାରିଲେ ।"

ରାଜାଙ୍କ ଉତ୍ତର ଦେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା । (କଳ୍ପିତ)





# ଦୁଧର ସ୍ୱାଦ

ଅନେକ କାଳ ତଳର କଥା । ସପ୍ତଗିରି ରାଜ୍ୟରେ ସେତେବେଳେ ରାଜୁତି କରୁଥାନ୍ତି ମଙ୍ଗଳଦେବ ।

ମଙ୍ଗଳଦେବ ଖୁବ୍ ସାଧୁ ପ୍ରକୃତିର ରାଜା ଥିଲେ । ସାଧୁତା ସହିତ ତାଙ୍କ ଚେତନାରେ ଜ୍ଞାନର ସମାବେଶ ବି ହୋଇଥିଲା ।

ରାଜଧାନୀଠୁଁ କିଛି ଦୂରବର୍ତ୍ତୀ ଗୋଟିଏ ବଣରେ ଜଣେ ତପସ୍ୱୀ ରହୁଥାନ୍ତି । ରାଜା ବିଶ୍ୱସ୍ତ ସୂତ୍ରରୁ ଜାଣିଲେ କି ସେ ତପସ୍ୱୀ ଜଣେ ସିଦ୍ଧପୁରୁଷ । ତପସ୍ୱୀଙ୍କ ସହ ଥରେ ଦେଖା କରିବା ନିମନ୍ତେ ରାଜା ମନ ବଳାଇଲେ । ତପସ୍ୱୀଙ୍କ ଅନୁମତି ଆଣିବା ସକାଶେ ସେ ମନ୍ତ୍ରୀଙ୍କୁ ପଠାଇଲେ । ମନ୍ତ୍ରୀ ଯାଇ ତପସ୍ୱୀଙ୍କୁ ରାଜାଙ୍କ ଇଚ୍ଛା ଜଣାଇବାରୁ ତପସ୍ୱୀ କହିଲେ, "ବେଶ୍ । ରାଜାଙ୍କୁ ମୁଁ ସ୍ୱାଗତ କରିବି । ସେ ଯେଉଁଦିନ ଇଚ୍ଛା ଆସନ୍ତୁ ।"

ମନ୍ତ୍ରୀ ତପସ୍ୱୀଙ୍କୁ ପ୍ରଣାମ କରି ସେଠାରୁ ବାହାରି ଆସିବା ମାତ୍ରେ ତପସ୍ୱୀଙ୍କ ଜଣେ ଶିଷ୍ୟ ତାଙ୍କୁ କହିଲେ, "ମହାଶୟ, ଟିକିଏ ରହନ୍ତୁ ।" ଏହା କହି ଶିଷ୍ୟ ଗୋଟିଏ ପାତ୍ରରେ କିଛି ଦୁଧ ଆଣି ମନ୍ତ୍ରୀଙ୍କୁ ଦେଲେ । ମନ୍ତ୍ରୀ ସେ ଦୁଧ ପିଇ ଚମକି ଉଠିଲେ । ଏଡ଼େ ସୁସ୍ୱାଦୁ ଦୁଧ ସେ ଜୀବନରେ କେବେ ଚାଖି ନଥିଲେ ।

ସେ ଶିଷ୍ୟଙ୍କୁ ପଚାରିଲେ, "ଏ ଦୁଧ କି ପ୍ରକାର ଗାଈର ହୋଇପାରେ ? ଇଏତ ଅଦ୍ଭୁତ ସୁସ୍ୱାଦୁ !"

ଶିଷ୍ୟ କହିଲେ, "ଗାଈର ପ୍ରକାର ଭେଦ ମୋତେ ଜଣାନାହିଁ । ତେବେ ଏ ଗାଈଟିକୁ ଗୁରୁଦେବ ନିଜେ ବହୁତ ଯତ୍ନ କରି ପାଳିଥାନ୍ତି । ଦୁଧ ଆପଣଙ୍କୁ ବହୁତ ଭଲ ଲାଗିଲା ଜାଣି ଖୁସି ହେଲି ।"

ଦେବପ୍ରିୟ

ମନ୍ତ୍ରୀ ଯାଇ ରାଜାଙ୍କୁ କହିଲେ କି ତପସ୍ୱୀ ତାଙ୍କୁ ଯେ କୌଣସି ଦାନ ଭେଟିବାକୁ ରାଜି । ରାଜା ବିଳମ୍ବ ନକରି ତହିଁ ପରଦିନହିଁ ମନ୍ତ୍ରୀଙ୍କ ଗହଣରେ ଆସି ବଣ ଭିତରେ ପହଞ୍ଚିଲେ । ତପସ୍ୱୀ ତାଙ୍କୁ ଆଦର କରି ବସାଇଲେ ଓ ଦୁଇଜଣଙ୍କୁ ଦୁଧ ଆଣି ପରଶିବା ସକାଶେ ନିଜ ଶିଷ୍ୟକୁ ନିର୍ଦ୍ଦେଶ ଦେଲେ ।

ଶିଷ୍ୟ ଦୁଧ ଆଣିବାକୁ ବାହାରିଗଲା ବେଳେ ମନ୍ତ୍ରୀ ଶିଷ୍ୟକୁ ନିଜ ପାଖକୁ ଡାକି ଚୁପ୍ ଚୁପ୍ କହିଲେ, "ବାବୁ, ଗଲା କାଲି ମୋତେ ଯେଉଁ ଗାଈର ଦୁଧ ଦେଇଥିଲ, ରାଜାଙ୍କୁ ସେଇ ଦୁଧ ଦେବ ।"

"ନିଶ୍ଚୟ, ନିଶ୍ଚୟ! ଅତିଥିମାନଙ୍କୁ ସେହି ଗାଈର ଦୁଧ ଦେବା ନିମନ୍ତେ ଗୁରୁ ଆମକୁ କହି ରଖିଛନ୍ତି ।" ଏହା କହି ଶିଷ୍ୟ ବାହାରି-ଗଲେ ଓ ସଙ୍ଗେ ସଙ୍ଗେ ଦୁଇଟି ପାତ୍ରରେ ଦୁଧ ନେଇ ଫେରିଲେ ।

"ଆଜ୍ଞା, ଏ ଦୁଧ ସେହି ଗାଈର!" ଏହା କହି ଶିଷ୍ୟ ମନ୍ତ୍ରୀଙ୍କୁ ତାଙ୍କ ଦୁଧ ପାତ୍ରଟି ଧରାଇ ଦେଲେ ।

ମନ୍ତ୍ରୀ କିନ୍ତୁ ଦୁଧ ସାମାନ୍ୟ ଚୁଷି ମୁହଁ ବିକୃତ କରିଦେଲେ । ରାଜା ତପସ୍ୱୀଙ୍କ ସହ କଥା କହିବାରେ ମଗ୍ନ ରହିଥାନ୍ତି ଓ ମଝିରେ ମଝିରେ ଦୁଧ ପିଉଥାନ୍ତି । ମନ୍ତ୍ରୀ ଶିଷ୍ୟଙ୍କୁ ପଚାରିଲେ, "ହଇହେ ବାବୁ, ଇଏ କ'ଣ ସତରେ ସେହି ଗାଈର?"

"ହଁ ଆଜ୍ଞା, ସେହି ଗାଈର ।" ଶିଷ୍ୟ କହିଲେ ।



"ନାହିଁ ହେ, ତମେ ଭୁଲ୍ କହୁଛ । ଏହା ସେ ଗାଈର ହୋଇ ପାରେ ନା ।" ମନ୍ତ୍ରୀ ମନ୍ତବ୍ୟ ଦେଲେ ।

"ଆଜ୍ଞା, ମୁଁ ଜାଣେ । ମୁଁ ନିଜେ ସେ ଗାଈର ଦୁହିଁ ନାଏ । ଏଥିରେ ଭୁଲ୍ ହୋଇ ପାରେନା । ଆପଣଙ୍କୁ କ'ଣ ମିଛ କହିବି ?" ଶିଷ୍ୟ କହିଲେ ।

କିଛି ସମୟ ପରେ ଗୁରୁ କୋଠରୀ ବାହାରକୁ ଗଲେ । ମନ୍ତ୍ରୀ ରାଜାଙ୍କୁ ପଚାରିଲେ, "ପ୍ରଭୁ! ଦୁଧ ଆପଣଙ୍କୁ କିପରି ଲାଗିଲା ?"

ରାଜା କହିଲେ, "ଅତି ଚମତ୍କାର ! ଏମିତି ଦୁଧ ମୁଁ କେବେ ପିଇ ନଥିଲି ।"

ମଂତ୍ରୀ କହିଲେ, "ମହାରାଜ ! ମୋତେ ବି ଗତକାଲି ଏ ଦୁଧ ବଢ଼ିଆ ଲାଗିଥିଲା । ମୁଁ ତ ଭାବିଥିଲି ତପସ୍ୱୀ ଯେତେ ମୂଲ୍ୟ ଚାହିଁଲେ ବି ତାଙ୍କଠୁଁ ଗାଈଟି ଆମେ କିଣି ନେଇଯିବା । ଆଜି କିନ୍ତୁ ସେ ଦୁଧ ମୋତେ ସୁଆଦିଆ ଲାଗିଲା ନାହିଁ ।"

ରାଜା ଗମ୍ଭୀର ହୋଇ କହିଲେ, "ମଂତ୍ରୀ! ତମେ ମୂଢ଼ । ତପସ୍ୱୀ ତମକୁ ସ୍ନେହ ଭରେ ଦୁଧ ପିଇବାକୁ ଦେଲେ । ତମେ ପିଇ ସାରିବା ମାତ୍ରେ ତମ ବ୍ୟବସାୟ ବୁଦ୍ଧି ଦେଇ ତାଙ୍କ ସ୍ନେହର ଦାନକୁ ଟଙ୍କା ଦ୍ୱାରା ମାପିବାକୁ ବସିଗଲ ! ପ୍ରଥମେ ଦୁଧ ତମକୁ ତପସ୍ୱୀଙ୍କ ପ୍ରତି ତମ କୃତଜ୍ଞତା ଯୋଗୁଁ ଭଲ ଲାଗିଥିଲା । ଆଜି ତମ ନୀଚ ବୁଦ୍ଧି ଯୋଗୁଁ ତାହା ତମକୁ ଖରାପ ଲାଗିଲା । ବୁଝିଲ ?"

ମଂତ୍ରୀ ମୁହଁ ତଳକୁ କରି କହିଲେ, "ବୁଝିଲି, ପ୍ରଭୁ ।"

ରାଜା ପୁଣି କହିଲେ, "ମଂତ୍ରୀ! ମୁଁ ଆଜି ସାରାଦିନ ଓ ରାତି ଏଠି ରହିବି । କିନ୍ତୁ ମୁଁ ଏକୁଟିଆ ରହିବାକୁ ଚାହେଁ । ତମେ ଯାଅ । କାଲି ସକାଳକୁ ଜଣେ ଦେହରକ୍ଷୀ ପଠାଇ ଦେବ । ମୁଁ ଫେରିଯିବି ।"

ମଂତ୍ରୀ ଚାଲିଗଲେ । ତପସ୍ୱୀ ଆସି ରାଜାଙ୍କ ସହ ଅନ୍ତରଙ୍ଗ ଭାବରେ କଥାବାର୍ତ୍ତା କଲେ ।






ଭାରତର ମନ୍ଦିର

# କାଉଁରୀ କାମାକ୍ଷା

କାହିଁ କେତେ ପୂର୍ବକାଳରୁ ଆସାମର ଗୁଆହାଟି ନଗରୀ ନିକଟବର୍ତ୍ତୀ ନୀଳ ପର୍ବତ ଉପରେ ଅବସ୍ଥିତ ଦେବୀ କାମାକ୍ଷା ମାନ୍ତ୍ରିକ, ତାନ୍ତ୍ରିକ ଗୁଣୀ ଓ ଯାଦୁକରମାନଙ୍କ ଆରାଧ୍ୟା ରୂପେ ଗଣିତା ହେଉଛନ୍ତି ।

ଦକ୍ଷ ଯଜ୍ଞ ପରେ ସତୀଙ୍କ ମୃତଶରୀର ନେଇ ଯେତେବେଳେ ଶିବ ବୁଲୁଥିଲେ ଓ ବିଷ୍ଣୁଙ୍କ ସୁଦର୍ଶନ ଚକ୍ର ସେ ଶରୀରକୁ ଖଣ୍ଡ ଖଣ୍ଡ କରିଦେଲା, ସେତେବେଳେ ଦେବୀଙ୍କ ଏକ ଅଙ୍ଗ ଏହି ପର୍ବତ ଉପରେ ପଡ଼ିଥିଲା ବୋଲି କିମ୍ବଦନ୍ତୀ କହେ । ବହୁକାଳ ପର୍ଯ୍ୟନ୍ତ ଏ ଶକ୍ତିପୀଠ ଲୋକଙ୍କ ପାଇଁ ଦୁର୍ଗମ ଥିଲା ।





ଷୋଡ଼ଶ ଶତାବ୍ଦୀରେ ଦୁର୍ଦ୍ଧର୍ଷ କଳାପାହାଡ଼ କାମାକ୍ଷା ମନ୍ଦିର ଭାଙ୍ଗିଦେଲା । ସେ ଏପରି ଭାବରେ ହଠାତ ପହଞ୍ଚିଯାଇ ତା' ଧ୍ୱଂସ ଲୀଳା ଘଟାଇ ଚାଲିଗଲା ଯେ ସ୍ଥାନୀୟ ରାଜାମାନେ ମନ୍ଦିର ରକ୍ଷା କରିବା ଭଳି କିଛି କରିବାକୁ ସମୟ ପାଇଲେ ନାହିଁ । ଏହା ପରେ ବହୁବର୍ଷ ପର୍ଯ୍ୟନ୍ତ ମନ୍ଦିର ଅବହେଳିତ ହୋଇ ରହିଲା ।




ଥରେ ଆସାମର କୋଚ୍ ବଂଶୀୟ ରାଜା ମଲ୍ଲଦେବ ବଙ୍ଗର ନବାବଙ୍କ ବିରୁଦ୍ଧରେ ଅଭିଯାନ କଲେ । ଯୁଦ୍ଧରେ ସେ ପରାସ୍ତ ହୋଇ ବନ୍ଦୀ ହେଲେ । ନବାବ ମଲ୍ଲଦେବଙ୍କୁ କୌଣସି ମତେ ମୁକ୍ତ କରିବାକୁ ରାଜି ହେଲେ ନାହିଁ ।

ଥରେ ବନ୍ଦୀ ରାଜା ରାତିରେ ସ୍ୱପ୍ନରେ ଦେବୀଙ୍କୁ ଦେଖିଲେ । ଦେବୀ କହିଲେ, "ତୋ ନିଜ ରାଜ୍ୟର ଆରାଧ୍ୟା ଦେବୀଙ୍କ ମନ୍ଦିର ଭାଙ୍ଗି ପଡୁଛି । ଅଥଚ ପର ରାଜ୍ୟ ଅଧିକାର କରିବା ପାଇଁ ବାହାରି ପଡ଼ିବାକୁ ତୋତେ ସଙ୍କୋଚ ଲାଗିଲା ନାହିଁ ?"





ରାଜା ଭୀଷଣ ଲଜ୍ଜା ପାଇଲେ ଓ ଦେବୀଙ୍କୁ କ୍ଷମା ମାଗିଲେ । ଦେବୀ ତାଙ୍କୁ ତାଙ୍କ ମୁକ୍ତି ଲାଭର ଉପାୟ କହିଦେଲେ । ପରଦିନ ନବାବଙ୍କ ମା ବଗିଚାରେ ବୁଲୁଥିବା ବେଳେ ତାଙ୍କୁ ସାପ କାମୁଡ଼ି ଦେଲା । ସେ ଜ୍ଞାନ ହରାଇଲେ ।

ନବାବ ବଡ଼ ବଡ଼ ଚିକିତ୍ସକ ଓ ଗୁଣିଆ ମାନଙ୍କୁ ଡକାଇଲେ । ସେମାନେ ଯଥାସାଧ୍ୟ ଚେଷ୍ଟା କଲେ । କିନ୍ତୁ ନବାବଙ୍କ ମା କ୍ରମେ ମୃତ୍ୟୁ କୋଳକୁ ଢ଼ଳି ପଡୁଥିବାର ଜଣାଗଲା । ନବାବ ତାଙ୍କ ମା'ଙ୍କୁ ବହୁତ ଭକ୍ତି କରୁଥିଲେ । ସେ ଭାଙ୍ଗି ପଡିଲେ ।





ନବାବ ଘୋଷଣା କଲେ ଯିଏ ତାଙ୍କ ମା'ଙ୍କୁ ଭଲ କରିଦେବ, ସିଏ ଯାହା ଚାହିଁବ ତାହା ପାଇବ । ଦରବାରର ଲୋକେ ଏ ଘୋଷଣା ଶୁଣିଲେ ସିନା, କିନ୍ତୁ ବୈଦ୍ୟ ଓ ଗୁଣିଆମାନେ କିଛି କରି ପାରୁ ନଥିବା ସ୍ଥଳେ ସେମାନେ ବା କ'ଣ କରି ପାରନ୍ତେ ?

ବନ୍ଦୀ ରାଜା ମଲ୍ଲିଦେବ ତାଙ୍କ ପ୍ରହରୀକୁ କହିଲେ, "ନବାବଙ୍କୁ କୁହ, ମୁଁ ତାଙ୍କ ମା'ଙ୍କୁ ଭଲ କରିଦେବି । ସର୍ତ୍ତ ହେଲା, ସେ ମୋତେ ମୁକ୍ତ ଦେବେ ।" ନବାବଙ୍କ ପାଖରେ ସେ ବାର୍ତ୍ତା ସଙ୍ଗେ ସଙ୍ଗେ ପହଞ୍ଚିଗଲା । ରାଜାଙ୍କ ସର୍ତ୍ତରେ ନବାବ ରାଜି ହେଲେ ।





ରାଜା ନବାବଙ୍କ ମା'ଙ୍କୁ ସତରେ ଭଲ କରିଦେଲେ । ସେ ପାଇଁ ଦେବୀ କାମାକ୍ଷା ତାଙ୍କୁ ସ୍ୱପ୍ନରେ ମନ୍ତ୍ର ଦେଇଥିଲେ । ନବାବ ତାଙ୍କୁ କୃତଜ୍ଞତା ଜଣାଇଲେ । ସତେ ଅବା ସେ ପୁରୁଣା ବନ୍ଧୁ, ସେହିପରି ଭାବରେ ତାଙ୍କୁ ବିଦାୟ ସମ୍ବର୍ଦ୍ଧନା ଦିଆଗଲା ।

ନିଜ ରାଜଧାନୀରେ ପହଞ୍ଚିବା ମାତ୍ରେ ରାଜା ଦେବୀ କାମାକ୍ଷାଙ୍କ ମନ୍ଦିର ପୁନର୍ନିର୍ମାଣ ଦିଗରେ ମନୋନିବେଶ କଲେ । ମନ୍ଦିରର ରକ୍ଷଣାବେକ୍ଷଣା ଓ ନିୟମିତ ପୂଜାବିଧି ଦିଗରେ ବିହିତ ବ୍ୟବସ୍ଥା କରାଗଲା । ସେ ନିଜେ ଜଣେ ଆନ୍ତରିକ ଭକ୍ତ ଭାବରେ ସବୁ ଦେଖାଶୁଣା କରୁଥାନ୍ତି ।






ଆଜି ଆଉ କାମାକ୍ଷା ମନ୍ଦିରକୁ ପଥ ଦୁର୍ଗମ ହୋଇ ନାହିଁ । ନିୟମିତ ଭକ୍ତ ଓ ଦର୍ଶକ ସ୍ରୋତ ଲାଗି ରହିଛି । ମନ୍ଦିରର ପରିବେଶ ପ୍ରାକୃତିକ ଓ ମନୋରମ । ମନ୍ଦିର ଭିତରେ ଦେବୀଙ୍କର କୌଣସି ମୂର୍ତ୍ତି ନାହିଁ । ଖଣ୍ଡିଏ ପ୍ରସ୍ତର ହିଁ ତାଙ୍କ ପ୍ରତୀକ ।



# ମାଗଣାରେ ଧର୍ମ

ଲବଙ୍ଗପୁରର ରାଜା ଶାନ୍ତଗୁପ୍ତ ଖୁବ୍ ଧାର୍ମିକ ବ୍ୟକ୍ତି ଥିଲେ । ଅବଶ୍ୟ ତାଙ୍କ ରାଜ୍ୟରେ ଯେ ସୁଶାସନ ଥିଲା, ଏଥିରେ ସନ୍ଦେହ ନାହିଁ । ଚୋରି ଡକାଏତି ନ ଥିଲା କହିଲେ ଚଳେ । ରାଜ-କର୍ମଚାରୀମାନେ ସ୍ୱଚ୍ଛ ରୂପେ ନିଜ ନିଜ କର୍ତ୍ତବ୍ୟ ସମ୍ପାଦନ କରୁଥିଲେ । ସବୁ କଥା ଭଲରେ ଚାଲିଥିଲା ।

ରାଜା ଭାବିଲେ, "ରାଜ୍ୟରେ ନିୟମକାନୁନ୍, ଶାନ୍ତି ଶୃଙ୍ଖଳା, ଏସବୁ ବ୍ୟାପାରରେ କୌଣସି ସମସ୍ୟା ନାହିଁ । ବର୍ତ୍ତମାନ ପ୍ରଜାଙ୍କ ହିତ ପାଇଁ ଆହୁରି କିଛି କରିବା ଦରକାର ।" ଏହା ଭାବି ସେ ଲୋକେ କିପରି ଅଧିକରୁ ଅଧିକ ଧର୍ମପରାୟଣ ହେବେ, ଆଧ୍ୟାତ୍ମିକ ଚିନ୍ତାରେ ମନ ଦେବେ, ସେହି ବିଷୟ ଚିନ୍ତା କଲେ ।

ତାଙ୍କର ଜଣେ ସଭାସଦ୍ ଦିନେ ତାଙ୍କୁ କହିଲେ, "ମହିମା, ପ୍ରଜାଙ୍କୁ ଧର୍ମପଥକୁ ଆଣିବାକୁ ହେଲେ ରାଜ୍ୟରେ ସାଧୁସନ୍ଥମାନଙ୍କୁ ସମ୍ମାନ ଦେବା ଆବଶ୍ୟକ । ସାଧୁସନ୍ଥଙ୍କ ସମ୍ମାନ ଓ ପ୍ରତିପତ୍ତି ଯେତିକି ବଢ଼ିବ, ସମାଜରେ ଧର୍ମ ସେତିକି ବ୍ୟାପକ ହେବ ।"

ଏକଥା ରାଜାଙ୍କ ମନକୁ ବେଶ୍ ପାଇଲା । ସେ ରାଜ୍ୟର ଭିନ୍ନ ଭିନ୍ନ ଅଞ୍ଚଳରେ ସାଧୁସନ୍ଥଙ୍କ ସକାଶେ ଦାତବ୍ୟ ଭୋଜନାଳୟ ଖୋଲିଦେଲେ । ସେମାନଙ୍କ ପାଇଁ ଲୁଗାପଟା ମାଗଣା ଦେବାର ବ୍ୟବସ୍ଥା ବି ହୋଇଗଲା । ରାଜା ଖୁସି ହେଲେ । ମଝିରେ ମଝିରେ ରାଜଧାନୀ ଭିତରେ ଥିବା ଦୁଇଟି ସନ୍ଥ ନିବାସକୁ ଯାଇ ସେ ଦେଖନ୍ତି, ବେଶି ବେଶି ସାଧୁ ଆସି ଖିଆପିଆ କରୁଛନ୍ତି । ସାଧୁ ସଂଖ୍ୟା ଅଧିକ ହେବାର ଦେଖି ସେ ଧରିନେଲେ ଯେ ରାଜ୍ୟରେ ଧର୍ମଭାବ ବଢ଼ି ଚାଲିଛି । ସେ କର୍ମଚାରୀମାନଙ୍କୁ କଡ଼ା ନିର୍ଦ୍ଦେଶ ଦେଲେ କି ସେମାନେ ଯେପରି

ଭେକ ଯୋଗୁଁ ଭିକ



ସାଧୁ ସନ୍ଥଙ୍କ ପ୍ରତି ସର୍ବଦା ଭଲ ବ୍ୟବହାର କରନ୍ତି ।

କିନ୍ତୁ ଆଶ୍ଚର୍ଯ୍ୟର କଥା, ପୂର୍ବରୁ ରାଜ୍ୟରେ ଚୋରି ଡକାଏତି ନଥିବା ସ୍ଥଳେ ବର୍ତ୍ତମାନ ରାଜ୍ୟରେ ଆସ୍ତେ ଆସ୍ତେ ଚୋରି ହେବାର ଦେଖାଗଲା ।

ଜଣେ ଉଚ୍ଚ ପଦସ୍ଥ କର୍ମଚାରୀ କହିଲେ, "ମହାରାଜ, ଅନେକ ଲୋକ ଅଳସୁଆ ଭାବରେ ବେଳ କାଟୁଥିବାର ଦେଖାଯାଉଛି । ସେହି-ମାନେ ଚୋରି କରୁଥିବେ ।"

ରାଜା ସେଉଠୁ ହୁକୁମ ଜାରି କଲେ କି ଅଳସୁଆ ରହିବା ଅପରାଧ । ସମସ୍ତେ କିଛି ନା କିଛି କାମ କରିବାକୁ ବାଧ୍ୟ ।

ଏହା ସତ୍ତ୍ୱେ ଚୋରି ବନ୍ଦ ହେଲନି । ଦିନେ ରାଜା ଓ ମଂତ୍ରୀ ଛଦ୍ମବେଶ ପକାଇ ରାତି ଥାଉଁ ଥାଉଁ ଘୋଡ଼ା ଚଢ଼ି ବାହାରିଗଲେ । ରାଜଧାନୀଠୁଁ କିଛି ଦୂରରେ ଗୋଟିଏ ସହରରେ ପହଞ୍ଚି ଘୋଡ଼ା ଦୁଇଟି ଗୋଟିଏ ଚଟିଘର ମାଲିକ ଜିମାରେ ରଖି ସହର ଭିତରକୁ ଯିବାକୁ ବାହାରିଛନ୍ତି, ଦେଖିଲେ ସେହି ଚଟିଘରେ ଦଳେ ଲୋକ ବସି ଗପ ଜମେଇଛନ୍ତି । ରାଜା ଓ ମଂତ୍ରୀ ବୁଝିଲେ, ସେମାନେ ସବୁଦିନ ଏମିତି ବସି ଗପ କରନ୍ତି ଓ ପଶା ଖେଳନ୍ତି ।

ରାଜା ଓ ମଂତ୍ରୀ ଅନ୍ୟ ରାଜ୍ୟରୁ ଆସିଛନ୍ତି କହି ସେମାନଙ୍କ ସହ ମିଶିଲେ ଓ ବନ୍ଧୁତା ସ୍ଥାପନ କରି ପଚାରିଲେ, "ତମମାନଙ୍କ ରାଜ୍ୟରେ ପରା ଅଳସୁଆ ହେବା ଗୋଟାଏ ଅପରାଧ ?"

ସେ ଲୋକେ ପରସ୍ପର ଆଡ଼କୁ ଅନାଇଲେ ଓ ତା'ପରେ କଟମଟ କରି ରାଜା ଓ ମନ୍ତ୍ରୀଙ୍କ ଆଡ଼କୁ ଅନାଇଲେ । ରାଜା ଓ ମନ୍ତ୍ରୀ କିନ୍ତୁ ଏପରି ସୁନ୍ଦର ଅଭିନୟ କଲେ ଯେ ସେମାନେ ଯେ ବିଦେଶୀ ଓ ନିରୀହ, ଏଥିରେ ଲୋକଙ୍କର କୌଣସି ସନ୍ଦେହ ରହିଲା ନାହିଁ । ରାଜା ଓ ମନ୍ତ୍ରୀ ସେମାନଙ୍କ ସହ ବହୁତ ମଜାଗପ କଲେ ଓ ସେମାନଙ୍କୁ ପାନ ସୁପାରି ମଧ୍ୟ ଦେଲେ । ସେମାନେ ଖୁସି ହେଲେ ।

ରାଜା ଓ ମନ୍ତ୍ରୀ ଭଲ ଭାବରେ ସେ କୋଠରୀ ଭିତରେ ଥିବା ଜିନିଷପତ୍ର ଲକ୍ଷ୍ୟ

କରୁଥାନ୍ତି । ସେମାନେ ଦେଖିଲେ କେତୋଟି ଶାବଳ ଓ କଲା କଲା ଥଳି ଘର କୋଣରେ ରହିଛି ।

ଯେତେବେଳେ ସେ ଦୁହିଁଙ୍କ ମତଲବ୍ ସମ୍ପର୍କରେ ଲୋକଙ୍କର କିଛି ସନ୍ଦେହ ରହିଲା ନାହିଁ, ରାଜା ଓ ମନ୍ତ୍ରୀ ତାଙ୍କ ପ୍ରଶ୍ନ ପୁଣି ଉଠାଇଲେ ।

ସେ ଲୋକମାନେ ହସିଲେ ଓ କହିଲେ, "ଆରେ ଭାଇ, ଅପରାଧ ଠିକ୍, କିନ୍ତୁ ଅପରାଧୀଙ୍କୁ ଧରିବ କିଏ ? ସିପାହୀମାନେ ସାଧୁସନ୍ଥଙ୍କ ଖିଆପିଆ ବ୍ୟବସ୍ଥା ନେଇ ବ୍ୟସ୍ତ ରହୁଛନ୍ତି ।"

ଛଦ୍ମବେଶୀ ରାଜା ଓ ମଂତ୍ରୀ ପଚାରିଲେ, "କିନ୍ତୁ ତମେମାନେ ତ ଅଳସୁଆ ହୋଇ ଖାଲି ବସିଛ । ତମମାନଙ୍କୁ ଖିଆପିଆ ଜୁଟିବ କାହୁଁ ?"

ସେମାନେ ହସିଲେ ଓ କହିଲେ, "ଆରେ ଭାଇ, ତମେ ଦୁହେଁ ଅନ୍ୟ ରାଜ୍ୟର ଲୋକ । ଏ ରାଜ୍ୟର ସବୁ ରହସ୍ୟ ଏକାଥରେ ଜାଣିବାକୁ ଏତେ ବ୍ୟଗ୍ର କାହିଁକି ?"

ଗୁହୁଁ ଗୁହୁଁ ଦ୍ୱିପ୍ରହର ହୋଇଗଲା । ସେ ଲୋକେ ପଶାଖେଳ ଛାଡ଼ି ଉଠି ପଡ଼ିଲେ । ସମସ୍ତେ ଖଣ୍ଡିଏ ଖଣ୍ଡିଏ ଗେରୁଆ ଲୁଗା ପିନ୍ଧିଲେ ଓ ଖଣ୍ଡିଏ ଖଣ୍ଡିଏ ଗେରୁଆ ଚଦର ପକାଇଲେ । କେହି କେହି କମଣ୍ଡଳୁ ଓ ଆଶାବାଡ଼ି ବାହାର କରି ଆଣିଲେ । ଅଳ୍ପ ଦୂରରେ ଥିଲା ସାଧୁସନ୍ଥଙ୍କ ପାଇଁ ଦାତବ୍ୟ ଭୋଜନାଗାର । ସେଠାକୁ ଯାଇ ଆରାମରେ



ଖିଆପିଆ କଲେ ଓ ଛଟିଘରକୁ ଆସି ଗୋଟିଆ ପାଲଟି ପକାଇ ଶୋଇଗଲେ ।

ରାତରେ ପୁଣି ସେମାନେ ସେଇଆ କଲେ ।

ରାଜା ଓ ମଂତ୍ରୀ ବି ସେଇ ଛଟିଘରେ ଅନ୍ୟ ଏକ କୋଠରୀରେ ରହିଥାନ୍ତି । ମଝିରାତି ବେଳକୁ ସେ ଦୁହେଁ ଲକ୍ଷ୍ୟ କରି ଦେଖିଲେ, ସେ ଭଣ୍ଡ ବାବାଜୀଙ୍କ ଭିତରୁ କେତେଜଣ ଛଟିଘରୁ ବାହାରିଗଲେ । ସେମାନେ ଯେ ଚୋରି କରିବାକୁ ଯାଉଛନ୍ତି, ଏଥିରେ ଆଉ ରାଜାଙ୍କର ସନ୍ଦେହ ରହିଲା ନାହିଁ ।

ସକାଳ ହେବାରୁ ଦୁହେଁ ରାଜଧାନୀକୁ ଲେଉଟି ଗଲେ । ଅଳ୍ପ ସମୟ ଭିତରେ ରାଜାଙ୍କ ସୈନ୍ୟମାନେ ଆସି ସେ ଛଟିଘର ଘେରାଇ କରି ଅନେକ ଚୋରା ଜିନିଷ ଜବତ କଲେ ଓ ସେ ଭଣ୍ଡ ସାଧୁମାନଙ୍କୁ ଗିରଫ କଲେ ।

ରାଜଗୁରୁ ଦୀର୍ଘଦିନ ତୀର୍ଥାଟନରେ ଥିଲେ । ସପ୍ତାହକ ପରେ ସେ ଫେରି ଆସିଲେ ଓ ସବୁ ଶୁଣି ରାଜାଙ୍କୁ କହିଲେ, "ବତ୍ସ! ତମେ ମାଗଣା ଭୋଜନାଳୟ ବନ୍ଦ କରିଦିଅ । ଯିଏ ପ୍ରକୃତ ସନ୍ନ୍ୟାସୀ ସେ କୌଣସି ନା କୌଣସି ଆଶ୍ରମରେ ନିଜ ପାଇଁ ସ୍ଥାନ ଖୋଜିନେବ । ରାଜା ସେ ଦିଗରେ ବ୍ୟବସ୍ଥା କରିବା ମାନେ ସେ ବ୍ୟବସ୍ଥାର ଦୁରୁପଯୋଗ ହେବହିଁ ହେବ ।"

ରାଜା କହିଲେ, "ଗୁରୁଦେବ! ମୁଁ ଭାବିଥିଲି ଲୋକଙ୍କ ଭିତରେ ସାଧୁ ସନ୍ନ୍ୟାସୀଙ୍କ ପ୍ରଭାବ ବଢ଼ିଲେ ସେମାନେ ବି ଧର୍ମମାର୍ଗ କୁ ଆସିବେ ।"

"ବତ୍ସ, ଧର୍ମ ଓ ଅଧ୍ୟାତ୍ମିକତା ବ୍ୟକ୍ତିଗତ ବ୍ୟାପାର । ଯାହା ଜୀବନରେ ସେ ସମୟ ଆସିଯାଇଛି, ସେ ସେ ମାର୍ଗରେ ଯିବହିଁ ଯିବ । ତମେ ସେ ଦିଗରେ ସୁଯୋଗ ଦେଲେ ଯାହାର ନଯିବା କଥା ସେ ଯିବାକୁ ବାହାରିବ । ସେଥିରେ ନା ତା'ର ମଙ୍ଗଳ, ନା ରାଜ୍ୟର ମଙ୍ଗଳ ହେବ!" ଗୁରୁ କହିଲେ ।

ରାଜା ଘୋଷଣା କଲେ, "ଏଣିକି ମାଗଣା ଭୋଜନାଳୟମାନ ବନ୍ଦ ହେଲା!"





# ଉତ୍ତର ରାମାୟଣ

ଯମରାଜଙ୍କ ସହିତ ଯୁଦ୍ଧ କରିବା ପାଇଁ ରାବଣ ନିଜର ସୈନ୍ୟସାମନ୍ତ ଧରି ଯମଲୋକରେ ପହଞ୍ଚିଲା । ସେଠାରେ ସେ ପାପୀମାନଙ୍କର ଯନ୍ତ୍ରଣା ଓ ପୁଣ୍ୟାତ୍ମାମାନଙ୍କର ସ୍ୱର୍ଗଭୋଗ ଦେଖିଲା । କେଉଁଠି ପାପୀମାନେ ତପ୍ତ ବୈତରଣୀ ପାର ହେଉଛନ୍ତି ତ କେଉଁଠି କୁକୁର ତାଙ୍କ ଦେହରୁ ଖଣ୍ଡ ଖଣ୍ଡ ମାଂସ ଖାଉଛି, କେଉଁଠି ବା ତପ୍ତ ତୈଳପାତ୍ରରେ ପଡ଼ି ସେମାନେ ଛଟପଟ କରୁଛନ୍ତି । କେଉଁଠି ବା ଯମଦୂତମାନେ ସେମାନଙ୍କୁ ବାନ୍ଧି ନିର୍ଧୁମ ପିଟୁଛନ୍ତି । ଏହି ସବୁ ଦୃଶ୍ୟ ଦେଖି ତା' ମନ ଦୁଃଖରେ ଭରିଗଲା । ସେ ବଳପ୍ରୟୋଗ କରି ଯମଦୂତମାନଙ୍କଠାରୁ କେତେକ ପାପୀଙ୍କୁ ମୁକ୍ତ ଦେଲା । ଏଣେ ଯମଦୂତମାନେ ରାବଣର ଏପରି ବ୍ୟବହାରରେ କ୍ରୋଧରେ ଅସ୍ଥିର । ଅଗନ୍ତୁକ ଜଣେ ବ୍ୟକ୍ତି ଏପରି ବ୍ୟବହାର କରିବାରୁ ସେମାନେ କ୍ରୋଧରେ ଯାଇ ରାବଣର ପୁଷ୍ପକ ବିମାନକୁ ଭାଙ୍ଗିବାକୁ ଲାଗିଲେ, କିନ୍ତୁ ଯେହେତୁ ଏ ବିମାନ ଅକ୍ଷୟ ଥିଲା ତେଣୁ ଯେତେ ଭାଙ୍ଗିଲେ ମଧ୍ୟ ଏହା ନୂଆ ପରି ଦେଖାଯାଉଥିଲା ।

ଯମପୁରୀରେ ଏହା ପୂର୍ବରୁ କେବେ ଏଭଳି ବିଭ୍ରାଟ ଦେଖାଦେଇ ନଥିଲା । ଯମପୁରୀର ପ୍ରହରୀମାନେ ଯେତିକି କ୍ରୁଦ୍ଧ ହେଉଥାନ୍ତି, ସେତିକି ବିସ୍ମିତ ହେଉଥାନ୍ତି । ଜଣେ ଦାନବ କିପରି ସେ ରାଜ୍ୟକୁ ଆସିବାକୁ ସମର୍ଥ ହେଲା, ସେମାନଙ୍କ ସହ ଔଦ୍ଧତ୍ୟପୂର୍ଣ୍ଣ ବ୍ୟବହାର କରିବାକୁ ସେବା କାହିଁ ସାହସ ସଞ୍ଚୟ କଲା,

୮. ରାବଣର ପାତାଳ ଅଭିଯାନ




ସେମାନେ ଏସବୁ ବୁଝିପାରୁ ନଥାନ୍ତି । ସେମାନଙ୍କ କିଂକର୍ତ୍ତବ୍ୟବିମୂଢ଼ତାର ସୁଯୋଗ ନେଇ ରାବଣ ଆହୁରି କେତେକ ମୃତ-ପ୍ରାଣୀଙ୍କୁ ସେଠାରୁ ମୁକୁଳାଇ ଅନ୍ୟତ୍ର ପଳାଇବାକୁ ପ୍ରେରଣା ଦେଲା ।

ଇତିମଧ୍ୟରେ ନାରଦମୁନି ଆସି ଯମରାଜଙ୍କୁ କହିଲେ, "ଯମରାଜ, ଦଶଗ୍ରୀବ ନାମକ ଏକ ଶକ୍ତିଶାଳୀ ଭୟଙ୍କର ରାକ୍ଷସ ଆପଣଙ୍କ ସହିତ ଯୁଦ୍ଧ କରିବାକୁ ଆସି ଆପଣଙ୍କ ରାଜ୍ୟକୁ ଆକ୍ରମଣ କରିଛି । ଦଶଗ୍ରୀବ ବ୍ରହ୍ମାଙ୍କଠାରୁ ବରପ୍ରାପ୍ତ କରି କହୁଛି ଯେ ତିନିଲୋକ ମଧ୍ୟରେ ତାକୁ ପରାଜିତ କରିବା ଭଳି କେହି ନାହାଁନ୍ତି । ଏବେ ଆପଣଙ୍କ ଶକ୍ତିର ପରୀକ୍ଷା ହେବ । ମୁଁ ଶୁଣିଛି ସେ ଯାହା କରିବ ବୋଲି ଭାବେ ତତ୍‌କ୍ଷଣାତ୍ ତାହା କାର୍ଯ୍ୟରେ ପରିଣତ କରେ । ଏପରି ନୁହେଁ ଯେ ତାକୁ ଶାନ୍ତ ଭାବରେ କିଛି ବୁଝାଇଲେ ସେ ମାନିବ । ଦେଖନ୍ତୁ କ'ଣ ହେଉଛି ।"

ଠିକ୍ ସେହି ସମୟରେ ଦୂରରୁ ଅଟ୍ଟହାସ୍ୟ ଶୁଭିଲା । ଯମରାଜ ନିଜ ଆସନରେ ଥାଇ ଦେଖିପାରିଲେ ଅନେକ ଦୂରରେ ରାବଣ ଯମଦୂତଙ୍କ ସହିତ ଯୁଦ୍ଧ କରୁଛି । ରାବଣ ପାଶୁପତ ଅସ୍ତ୍ର ପ୍ରୟୋଗ କରିବା ମାତ୍ରେ ଯମଦୂତମାନେ ପୋକମାଛି ପରି ପୋଡି ମଲେ । ଏହି ଦୃଶ୍ୟ ଦେଖି ରାବଣ ଓ ତା'ର ଅନୁଚର-ବର୍ଗ ଆନନ୍ଦରେ ଅଟ୍ଟହାସ୍ୟ କରି ଉଠିଲେ । ସେମାନଙ୍କର ସାହସ ଆହୁରି ବଢ଼ିଗଲା । ଯମରାଜଙ୍କୁ ପରାସ୍ତ କରିବା ମଧ୍ୟ ସହଜ ହେବ ଭାବି ସେମାନେ କ୍ରମେ ଯମପୁରୀ ଭିତରକୁ ପ୍ରବେଶ କଲେ ।

ଯମରାଜ ନିଜର ପରିଚାରକମାନଙ୍କୁ ରଥ ସଜ କରିବା ପାଇଁ ଆଦେଶ ଦେଲେ । ସଙ୍ଗେ ସଙ୍ଗେ ଚାରିଟି ଲାଲ୍ ଘୋଡ଼ା ଯୋଖି ହୋଇଥିବା ରଥ ଆସିଲା । ସେଥିରେ ଯମରାଜ କାଳଦଣ୍ଡ ଓ କାଳପାଶ ସହିତ ଅନ୍ୟାନ୍ୟ ଅସ୍ତ୍ର ଧରି ବସିଲେ । ଦୁଇପକ୍ଷର ଭୀଷଣତା ଦେଖି ତିନିଲୋକ ବ୍ୟସ୍ତ ହୋଇଗଲେ । ଯମରାଜଙ୍କର ରୂପ ଓ ତେଜ ଦେଖି ରାବଣର ଅନୁଚରବର୍ଗ ଯିଏ ଯୁଆଡ଼େ ପଳାୟନ କଲେ । କିନ୍ତୁ ରାବଣ



ନିର୍ଭୟରେ ଠିଆ ହୋଇଥାଏ । ତା'ପରେ ଯୁଦ୍ଧ ଆରମ୍ଭ ହେଲା ଓ ତାହା ଭୟଙ୍କର ରୂପ ଧାରଣ କଲା । ଏହି ଯୁଦ୍ଧ ସାତଦିନ ପର୍ଯ୍ୟନ୍ତ ଚାଲୁ ରହିଲା । ଶେଷରେ ମୃତ୍ୟୁଦେବ ଯମ-ରାଜଙ୍କୁ କହିଲା, "ଧର୍ମରାଜ, ଏହି ରାକ୍ଷସ ସହିତ ମୋତେ ଯୁଦ୍ଧ କରିବାକୁ କୁହନ୍ତୁ ମୁଁ ତାକୁ ସଂହାର କରିବି । ମାରିବା ମୋର ଧର୍ମ । ମୁଁ ଆଗରୁ ଅନେକ ରାକ୍ଷସଙ୍କୁ ସଂହାର କରିଛି । ପ୍ରଳୟ କାଳରେ ଦେଖିଛି ରାକ୍ଷସମାନଙ୍କ ମୃତ୍ୟୁ । ଆଜି ଇଏ ବା କି ଛାର !"

ଯମରାଜ କହିଲେ, "ଏବେ ଦେଖ ମୁ ତାକୁ କପରି ମାରିବି । ମୁଁ ଶେଷ ଅସ୍ତ୍ର ପ୍ରୟୋଗ କରି ନଥିଲି, ଏବେ କରୁଛି ।"

ଏହା କହି ଯମରାଜ ତାଙ୍କର ଭୟଙ୍କର କାଳଦଣ୍ଡ ରାବଣ ଉପରେ ପ୍ରୟୋଗ କରିବା ପାଇଁ ପ୍ରସ୍ତୁତ ହେଲେ । ଏହି ସମୟରେ ଯମରାଜଙ୍କ ନିକଟରେ ବ୍ରହ୍ମା ଆବିର୍ଭାବ ହୋଇ ତାହା ନିବାରଣ କଲେ । ବ୍ରହ୍ମା କହିଲେ, "ଯମରାଜ, ତୁମେ ଏହି ଭୟଙ୍କର କାଳଦଣ୍ଡ ରାବଣ ଉପରେ ନିକ୍ଷେପ କରନାହିଁ । କାରଣ ରାବଣକୁ ମୁଁ ଅତ୍ୟନ୍ତ ଶକ୍ତିଶାଳୀ କରି ସୃଷ୍ଟି କରିଛି ଓ ବର ଦେଇଛି । ପୁଣି ତୁମର ଏହି କାଳଦଣ୍ଡ ଯାହା ଏକ ଅମୋଘ ଅସ୍ତ୍ର ତାକୁ ମଧ୍ୟ ମୁଁ ସୃଷ୍ଟି କରିଛି । ଏଇଟି ପ୍ରୟୋଗ କରିବା ଦ୍ୱାରା ଯଦି ରାବଣ ମରେ ତେବେ ମୋର ବାକ୍ୟ ବୃଥା ଯିବ । ଯଦି ରାବଣ ନ ମରେ ତେବେ ଏ ଅମୋଘ ଅସ୍ତ୍ରର ଶକ୍ତି ବ୍ୟର୍ଥ ଯିବ । ତେଣୁ ମୋ ଶକ୍ତିର କୌଣସି ମୂଲ୍ୟ ରହିବ ନାହିଁ । ଏହିକଥା ଭଲ ଭାବରେ ଚିନ୍ତାକରି କାଳଦଣ୍ଡ ପ୍ରୟୋଗ ବନ୍ଦ କର ।"

ବ୍ରହ୍ମାଙ୍କ କଥା ମାନି ଯମରାଜ କାଳଦଣ୍ଡ ପ୍ରୟୋଗ କରିବାରୁ କ୍ଷାନ୍ତ ହେଲେ । ତା'ପରେ ସେ ଭାବିଲେ ଯଦି ରାବଣକୁ ନ ଜିତିବି, ପୁଣି ଜିତିବାର ଶକ୍ତି ଥାଉ ଥାଉ, ତେବେ ଯୁଦ୍ଧରେ ବା କି ପ୍ରୟୋଜନ ? ତା'ପରେ ସେ ନିଜର ରଥ ଓ ରଥାରୋହୀମାନଙ୍କ ସହ ଅନ୍ତର୍ଦ୍ଧାନ ହୋଇ ବ୍ରହ୍ମାଙ୍କ ସହିତ ସ୍ୱର୍ଗକୁ ପଳାୟନ କଲେ ।

ଯମଙ୍କୁ ଖୋଜି ନ ପାଇ ରାବଣ ନିଜର ବିଜୟ ଘୋଷଣା କଲା ଓ ତା'ର ସମସ୍ତ

ଅନୁଚରବର୍ଗଙ୍କ ସହ ଯମଙ୍କ ରାଜ୍ୟରେ ପ୍ରବେଶ କଲା । ତା'ପରେ ସେ ପାତାଳପୁର ବିଜୟ କରିବାକୁ ଗଲା । ପ୍ରଥମେ ବାସୁକୀ ଇତ୍ୟାଦିଙ୍କ ବାସସ୍ଥଳୀ ଭୋଗବତୀ ନଗରୀକୁ ଦଖଲ କଲା । ତା'ପରେ ନିବାତ ଓ କବଚ ନାମକ ଦୁଇ ରାଜାଙ୍କ ସହ ଯୁଦ୍ଧ କଲା । ସେମାନେ ନାନା ପ୍ରକାର ମାୟା ଯୁଦ୍ଧ ଜାଣିଥିଲେ ଓ ତା'ଙ୍କ ପାଖରେ ନାନା ପ୍ରକାର ଅସ୍ତ୍ରଶସ୍ତ୍ର ଥିଲା । ଯୁଦ୍ଧ ଚାଲିଲା । ମାସ ମାସ ଧରି ବାରମାସ ବିତିଗଲା । ତଥାପି ବିଜୟ ପରାଜୟ କେଉଁ ପକ୍ଷରୁ ମଧ୍ୟ ହେଲା ନାହିଁ । ଅବଶେଷରେ ବ୍ରହ୍ମା ସେଠାରେ ପହଞ୍ଚି ଦୁଇ ପକ୍ଷ ମଧ୍ୟରେ ସନ୍ଧି ସ୍ଥାପନା କଲେ । ଅଗ୍ନିଙ୍କୁ ସାକ୍ଷୀ ରଖି ରାବଣ ସହିତ ସେମାନଙ୍କର ବନ୍ଧୁତା ହେଲା । ରାବଣ ସେଠାରେ କିଛିଦିନ ରହିଲା ଓ ସେମାନଙ୍କଠାରୁ ମାୟାଯୁଦ୍ଧର ରହସ୍ୟ ସବୁ ଶିଖିଗଲା । ତା'ପରେ ପୁଣି କେଉଁ ରାଜ୍ୟ ଆକ୍ରମଣ କରିବ ସେହି ଯୋଜନାରେ ବ୍ୟସ୍ତ ରହିଲା ।



ତା'ପରେ ସେ କାଳକେୟମାନଙ୍କ ସହିତ ଯୁଦ୍ଧ କଲା । ସେମାନଙ୍କ ମଧ୍ୟରେ ତା'ର ଭଗ୍ନିପତି ସୂର୍ପଣଖାର ସ୍ୱାମୀ ବିଦ୍ୟୁତଜିହ୍ୱ ମଧ୍ୟ ଥିଲା । ସେ ତା'ର ଜିହ୍ୱା ଦ୍ୱାରା ଶହ ଶହ ରାକ୍ଷସଙ୍କୁ ଚାଟି ଖାଇ ଦେଉଥିଲା । ଯୁଦ୍ଧରେ ସେ ଓ ଅନ୍ୟ ଅନେକ ବୀର ରାବଣ ହାତରେ ପ୍ରାଣ ଦେଲେ । ସେଠାରୁ ଯାଇ ରାବଣ ପହଞ୍ଚିଲା ବରୁଣାଳୟରେ । ସେଠାକାର ଦୃଶ୍ୟ ଅତି ସୁନ୍ଦର ଓ ମନୋମୁଗ୍ଧକର । ପ୍ରଥମେ ସେ ଦେଖିବାକୁ ପାଇଲା କାମଧେନୁ ସୁରଭିଙ୍କୁ । ତାଙ୍କଠାରୁ ପ୍ରତିକ୍ଷଣରେ କ୍ଷୀରଧାର ବହି ଚାଲିଛି ଓ ସେଥିରୁ ଉତ୍ପନ୍ନ ହୋଇଛି କ୍ଷୀରସାଗର । ସେହି କ୍ଷୀରସାଗରରୁ ଚନ୍ଦ୍ରମା ଓ ଅମୃତର ଆବିର୍ଭାବ ହୋଇଥିଲା । ଏହି ସାଗରର ଫେନସବୁ ପାନ କରି ମୁନିଋଷିମାନେ ଜୀବନଧାରଣ କରନ୍ତି । ଶିବଙ୍କ ବାହନ ନନ୍ଦୀ ଏହି କାମଧେନୁଙ୍କଠାରୁହିଁ ଉତ୍ପନ୍ନ ହୋଇଛନ୍ତି ।

ସେହି କାମଧେନୁ ସୁରଭିଙ୍କୁ ପ୍ରଦକ୍ଷିଣ କରି ରାବଣ ବରୁଣଙ୍କ ନଗର ଭିତରେ ପ୍ରବେଶ କଲା । ଦ୍ୱାରପାଳ ଓ ଅନେକ ଯୋଦ୍ଧା ରାବଣର ପଥରୋଧ କରିବାକୁ ଯାଇ ପ୍ରାଣ



ହେଲେ । ତା'ପରେ ବରୁଣଙ୍କର ପୁତ୍ରମାନେ ଯୁଦ୍ଧ କଲେ । ବରୁଣ ମଧ୍ୟ ଯୁଦ୍ଧ କଲେ । ଜିତିବା ଓ ହାରିବାର ପ୍ରଶ୍ନ ନଥାଏ । ବରୁଣ ଦେଖିଲେ ତାଙ୍କର ପୁତ୍ର, ପୌତ୍ର ଓ ସୈନ୍ୟଗଣ ପରାସ୍ତ ହୋଇଯାଉଛନ୍ତି । ତେଣୁ ସେ ସେଠାରୁ ଗୁପ୍ତରେ ପଳାୟନ କଲେ । ରାବଣକୁ ଅନ୍ୟମାନେ କହିଲେ ଯେ ବରୁଣ ସଙ୍ଗୀତ ଶୁଣିବାକୁ ବ୍ରହ୍ମଲୋକକୁ ଯାଇଛନ୍ତି । ରାବଣ ସେଠାରେ ନିଜର ବିଜୟ ସାବ୍ୟସ୍ତ କରିଲା ଓ ପୁଣି ପୂର୍ବ ରାଜ୍ୟକୁ ଫେରି ଆସିଲା । ତା'ପରେ ସେ ପୁଣି ଅନ୍ୟାନ୍ୟ ରାଜ୍ୟ ଜୟ କରିବାର ମନସ୍ଥ କଲା ।

ଏସବୁ ସାଫଲ୍ୟ ଫଳରେ ରାବଣର ଗର୍ବ ଯେତିକି ମାତ୍ରାରେ ବଢ଼ ବଢ଼ ଚାଲିଥାଏ, ପୃଥିବୀ ଓ ପ୍ରକୃତି ସେତିକି ମାତ୍ରାରେ ଭୟଭୀତ ହେଉଥାନ୍ତି । ରାକ୍ଷସର ଅନୁଚରମାନେ ଉଦ୍ଧତ ହୋଇ ଉଠୁଥାନ୍ତି । ସେଥିରେ ଜନସାଧାରଣ, ଋଷିବର୍ଗ ଓ ଦେବତାମାନେ ଆତଙ୍କ ଅନୁଭବ କରୁଥାନ୍ତି । କିନ୍ତୁ କିଛି କରିବାର ଉପାୟ ନଥାଏ । ସେମାନେ ଅସହାୟ ଭାବରେ ରାବଣର କ୍ରମାଗତ ଉପଦ୍ରବ ସହ୍ୟ କରି ଚାଲିଥାନ୍ତି । ତାର ବିଜୟ ଅଟ୍ଟହାସ୍ୟରେ ଚରାଚର ପ୍ରକମ୍ପିତ ହେଉଥାଏ ।

ଦିନେ ରାବଣ ପୁଷ୍ପକବିମାନରେ ବସି ବୁଲି ବୁଲି ଏକ ରାଜ୍ୟର ସୀମାରେ ଯାଇ ପହଞ୍ଚିଲା । ସେ ରାଜ୍ୟର ଐଶ୍ୱର୍ଯ୍ୟ ଦେଖି ସେ ବହୁତ ମୁଗ୍ଧ ହେଲା । ସେ ରାଜ୍ୟର ପ୍ରାକୃତିକ ଶୋଭା ଯେପରି ମନୋରମ, ତା'ର ସମୃଦ୍ଧି ମଧ୍ୟ ସେହିପରି ଆଶ୍ଚର୍ଯ୍ୟଜନକ । ରାବଣ ବହୁ ରାଜ୍ୟ ଦେଖିଥିଲା, କିନ୍ତୁ ସେପରି ରାଜ୍ୟ ପୂର୍ବରୁ ତା' ଆଖିରେ ପଡ଼ିନଥିଲା । ସେ ପ୍ରଥମେ କିଛି ସମୟ ବିସ୍ମିତ ଭାବରେ ଇତସ୍ତତଃ ବିଚରଣ କରି ସବୁ ଦେଖିଲା । ତା'ପରେ ସେ ଗୋଟିଏ ମହଲ ଦେଖିଲା ଓ ମନ୍ତ୍ରୀମାନଙ୍କୁ ପାଖକୁ ଡାକି କହିଲା, "ସେଠାକୁ ଯାଇ ବୁଝିଆସ ଏ ରାଜ୍ୟ କାହାର ।"

ମନ୍ତ୍ରୀ ପ୍ରହସ୍ତ ଯାଇ ସେହି ମହଲ ନିକଟରେ ପହଞ୍ଚିଲା । ଦେଖିଲା ସ୍ଥାନଟି ଜନମାନବଶୂନ୍ୟ ସାତପ୍ରସ୍ଥ ପାରି ହୋଇ ଯିବା ପରେ ଏକ ଦ୍ୱାର ପାଖରେ ଯାଇ ସେ ପହଞ୍ଚି ଦେଖିଲା ଏକ



ବିରାଟ ଅଗ୍ନି କୁଣ୍ଡ ମଧ୍ୟରେ ଜଣେ ତେଜସ୍ୱୀ ଓ ସୁନ୍ଦର ପୁରୁଷ ପ୍ରକଟିତ । ସେ ପ୍ରହସ୍ତକୁ ଦେଖିବା ମାତ୍ରେ କେବଳ କିଛି ସ୍ମିତହାସ୍ୟ କଲେ । ସେ ହସ ଦେଖି ପ୍ରହସ୍ତର ଶରୀର ପୁଲକିତ ହୋଇ ଉଠିଲା । ସେଇଠାରୁ ସେ ଫେରି ଆସି ରାବଣକୁ ସବୁକଥା କହିଲା ।

ରାବଣ ସବୁ ଶୁଣି ପୁଷ୍ପକ ବିମାନରୁ ଓହ୍ଲାଇ ପଡି ସେହି ଭବନ ଭିତରେ ପ୍ରବେଶ କଲା । ମୁଖ୍ୟ ଦ୍ୱାରରେ ସେ ଦେଖିଲା ଏକ ଭୟଙ୍କର ଆକୃତି ବିଶିଷ୍ଟ ପୁରୁଷ ।

ତାହାର ଶିରରେ ଥିଲା ଚନ୍ଦ୍ରମା । ତା' ମୁହଁରୁ ଅଗ୍ନି ନିର୍ଗତ ହେଉଥିଲା । ଆଖି ଓ ଓଠ ଲାଲ୍ ରଙ୍ଗର ଥିଲା । ହାତରେ ଥିଲା ଗଦା । ସେ ରାବଣକୁ ଦେଖି କହିଲା, "ହେ ରାକ୍ଷସ, ଡରିଯା'ନା, କହ ତୋର ଦରକାର କ'ଣ ?"

"ମୁଁ ଯୁଦ୍ଧ କରିବାକୁ ଚାହେ ।" ରାବଣ କହିଲା ।

"ତୁ କାହା ସହିତ ଯୁଦ୍ଧ କରିବୁ ? ମୋ ସହିତ ନା ବଳୀ ସହିତ ?" ସେ ପଚାରିଲା ।

"ମୁଁ ଏହି ନଗରର ମାଲିକ ସହିତ ଯୁଦ୍ଧ କରିବାକୁ ଚାହେ । ସେ ଯିଏ ହେଉନା କାହିଁକି । ମୁଁ ଦିଗ୍‌ବିଜୟ କରିବା ପାଇଁ ଘରୁ ବାହାରିଛି । ମୁଁ ସମସ୍ତ ବୀରଙ୍କୁ ପରାଜିତ କରିହିଁ ରାଜଧାନୀକୁ ଲେଉଟିବି । କୁହନ୍ତୁ, ଏଠାକାର ଅଧିପତି କାହାନ୍ତି ?" ରାବଣ କହିଲା ।

"ବଳୀ ଭିତରେ ଅଛନ୍ତି । ତୁ ଚାହୁଁ ତ ସେହି ମହାନ୍ ବ୍ୟକ୍ତିଙ୍କ ସହ ଯୁଦ୍ଧ କରିପାରୁ ।" ସେ କହିଲା ।

ରାବଣ ଭିତରକୁ ପ୍ରବେଶ କରି ଦେଖିଲା ଜ୍ୟୋତିଷ୍ମାନ୍ ମହାନୁଭବ ବଳୀ ସେଠାରେ ବିଦ୍ୟମାନ । ତାଙ୍କ ଦେହରୁ ନିର୍ଗତ ଜ୍ୟୋତିକୁ ଦେଖି ରାବଣର ଆଖି ବୁଜି ହୋଇ ପଡ଼ିଲା । ବଳୀ ରାବଣକୁ ଗୋଟିଏ ହାତରେ ଉଠାଇ ନେଇ ନିଜ ଜଙ୍ଘ ଉପରେ ତାକୁ ବସାଇ କହିଲେ, "ମୁଁ ତୁମର ଇଚ୍ଛା ପୂରଣ କରିବି ।"

"ମହାନୁଭବ, ମୁଁ ଶୁଣିଥିଲି କି ବହୁବର୍ଷ ପୂର୍ବେ ବିଷ୍ଣୁ ଆପଣଙ୍କୁ ଠକିଦେଇ ପାତାଳ-

ପୁରରେ ବନ୍ଦୀ କରି ରଖିଛନ୍ତି । ମୁଁ ତେଣୁ ଏଠାକୁ ଆସିଛି ଆପଣଙ୍କୁ ମୁକ୍ତ କରିବାକୁ ।" ରାବଣ କହିଲା ।

"ଓ, ଏପରି କଥା ? ଆଚ୍ଛା ମୁଁ ଗୋଟିଏ କଥା କହିବି । ତା' ପୂର୍ବରୁ ହେଇ ସେଠି ପଡ଼ିଛି ପଟେ କୁଣ୍ଡଳ; ଯାଇ ନେଇଆସ ତ !" ବଳି କହିଲେ ।

ରାବଣ ସେଠାକୁ ଯାଇ ଦେଖିଲା କୁଣ୍ଡଳ ଆକୃତିର ବଡ଼ ଚକପରି ସେଠାରେ କିଛି ଗୋଟାଏ ପଡ଼ିଛି । ବହୁ ଚେଷ୍ଟା କରି ତାକୁ ସେ ହଲାଇ ମଧ୍ୟ ପାରିଲା ନାହିଁ । ରାବଣର ବିସ୍ମୟର ତଥା ଲଜ୍ଜାର ସୀମା ରହିଲା ନାହିଁ । ସେ ଥରେ ବଳୀଙ୍କ ଆଡ଼କୁ ଅନାଇ ପୁଣି ପ୍ରାଣମୂର୍ଚ୍ଛା ଉଦ୍ୟମ କରି ସେ ଚକକୁ ଉଠାଇବାର ପ୍ରୟାସ କଲା । କିନ୍ତୁ ଫଳ କିଛି ହେଲା ନାହିଁ । ସେ ଗଳଦ୍‌ଘର୍ମ ହୋଇ ସେହି ଅଦ୍ଭୁତ ଚିଜ ଆଡ଼େ ଅନାଇ ରହିଥାଏ, କ'ଣ କରିବ ବୁଝିପାରୁ ନଥାଏ । ସେ ତ୍ରିଲୋକ ବିଜୟ କରିବାକୁ ବାହାରିଥିଲା । କିନ୍ତୁ ବର୍ତ୍ତମାନ ସେ ଗୋଟିଏ ଦୃଷ୍ଟିରୁ ପଡ଼ିଛି ! ସେ କରିବ କ'ଣ ? ସେ ଠିଆ ହୋଇପଡ଼ି ମୁଣ୍ଡ ତଳକୁ କରି ରହିଲା । ଏହା ଦେଖି ବଳି ରାବଣକୁ ପାଖକୁ ଡାକି କହିଲେ, "ତୁମେ ଯେଉଁ କୁଣ୍ଡଳଟି ଆଜି ଉଠାଇ ପାରୁନାହଁ ତାହା ହେଉଛି ମୋର ପ୍ରପିତାମହ ହିରଣ୍ୟକଶିପୁ କର୍ଣ୍ଣରେ ଧାରଣ କରିଥିଲେ । ସେ ମଧ୍ୟ ଏପରି ବରପ୍ରାପ୍ତ କରିଥିଲେ କି କାହା ହାତରେ ସେ ମରିବେ ନାହିଁ । କିନ୍ତୁ ଶ୍ରୀବିଷ୍ଣୁ ନୃସିଂହ ରୂପ ଧରି ତାଙ୍କୁ ବଧ କଲେ । ତମେ ମୋ ନଗରର ଦ୍ୱାର ଦେଶରେ ଯାହାଙ୍କୁ ଦେଖିଲ ସେହି ଦ୍ୱାରପାଳ ସ୍ୱୟଂ ବିଷ୍ଣୁ । ସେ ସର୍ବଦା ସେଠାରେ ବିଦ୍ୟମାନ ଥା'ନ୍ତି ।"

ଏକଥା ଶୁଣି ରାବଣ ରାଗିଯାଇ ଦ୍ୱାରପାଳ ବିଷ୍ଣୁଙ୍କ ପାଖକୁ ଦୌଡ଼ିଲା । କିନ୍ତୁ ସେଠାରେ ଯାଇ ଦେଖିଲା କେହି ନାହାନ୍ତି ।







# ମୋତିହାର

ବିଜୟପାଳ ଓ ତା' ସ୍ତ୍ରୀ ପ୍ରେମା ହରିପୁର ଗ୍ରାମରେ ଥା'ନ୍ତି । ବିବାହର ଦଶବର୍ଷ ପରେ ପ୍ରଥମ କରି ପ୍ରେମାର ଗର୍ଭଲକ୍ଷଣ ପ୍ରକାଶ ପାଇଲା । ଏତେ ଦିନର ଦୁଃଖ ପରେ ସୁଖ ସମୟ ଆସିଛି । ବିଜୟ ପ୍ରେମାର ସବୁ ଇଚ୍ଛା ପୂରଣ କରିବାରେ ଲଗିଥାଏ । ଦିନେ ବିଜୟ ଲକ୍ଷ୍ୟ କଲା ପ୍ରେମା ଯେପରି କିଛି କଥା ନେଇ ଚିନ୍ତା କରୁଛି । ବିଜୟ ତାକୁ ମୁହଁ ଖୋଲି ପଚାରିଲା, "ପ୍ରେମା, ତୁମେ ବହୁତ ଉଦାସ ଦେଖାଯାଉଛ । ଯଦି ତୁମ ମନରେ କିଛି ଇଚ୍ଛା ଥାଏ କୁହ ମୁଁ ତାକୁ ପୂରଣ କରିବା ପାଇଁ ଯତ୍‌ପରୋନାସ୍ତି ଚେଷ୍ଟା କରିବି ।"

"ରାମପୁରର ସୁନାରୀ ନାଗରାଜର ହାତଗଢ଼ା ଏକ ମୋତିମାଳ ପିନ୍ଧନ୍ତି । ତାହା ଅତ୍ୟନ୍ତ ମଙ୍ଗଳକାରୀ ।" ପ୍ରେମା କହିଲା ।

ବିଜୟ ଅଳ୍ପ ହସି କହିଲା, "ଏଇ କଥା ତ! ମୁଁ ନିଜେ ରାମପୁର ଯାଇ ହାର ଗଢ଼ାଇ ନେଇ ଆସିବି ।"

ପ୍ରେମା କହିଲା, "ନା, ନା, ମୋର ଏପରି ଅବସ୍ଥାରେ ତୁମେ ମୋଠାରୁ ଦୂରକୁ ଗଲେ ମୋର ମନ ବ୍ୟସ୍ତ ଓ ଅଧୀର ରହିବ । ତମେ ବରଂ ଆଉ କାହାକୁ ପଠାଇ ଦିଅ ।"

ବିଜୟ ଭାବି ଭାବି ଠିକ୍ କଲା ତା'ର ମିତ୍ର ଶମ୍ଭୁଦାସଙ୍କ ପୁଅ ଗଣେଶକୁ ପଠାଇଲେ ଚଳିବ । ଗଣେଶ ପିତା ଶମ୍ଭୁଦାସଙ୍କ କାଠ ବ୍ୟବସାୟରେ ସାହାଯ୍ୟ କରେ । ତା'ର ବହୁତ ଦିନୁ ଇଚ୍ଛା ଥରେ ରାମପୁର ଯିବ । କିନ୍ତୁ ଖର୍ଚ୍ଚ ଭୟରେ ତା' ବାପା ତାକୁ କେବେ ସେଠାକୁ ପଠାଇ ନଥିଲେ ।

ବିଜୟ ଗଣେଶକୁ ଘରକୁ ଡାକି କହିଲା, "ଗଣେଶ, ତୁ ମୋର ଗୋଟିଏ କାମ




କରିଦେବୁ। ମୁଁ ତୋ ବାପାର ଅନୁମତି ଆଣିଛି। ତୁ ରାମପୁର ଯାଇ ସେଠାକାର ବଡ଼ ସୁନାରି ନାଗରାଜ ପାଖରୁ ଏକ ମୋତିର ହାର ବନାଇ ଆଣିବୁ। ଯେତେଦିନ ଲାଗିବ ତୁ ସେଇଠି ମୋର ଆତ୍ମୀୟ ସିନ୍ଧୁବାବୁଙ୍କ ଘରେ ରହିବୁ। ମାଲ ହୋଇ ସାରିଲେ ହାତରେ ଧରି ଫେରିବୁ। ସିନ୍ଧୁବାବୁ ମଧ୍ୟ ତତେ ନାଗରାଜ ପାଖକୁ ନେଇଯିବେ ଓ ଏ ବିଷୟରେ ଅନେକ ସାହାଯ୍ୟ କରିବେ।"

ଗଣେଶର ତ ବହୁଦିନରୁ ଇଚ୍ଛା ଥିଲା। ଏବେ ପ୍ରସ୍ତାବଟି ଶୁଣି ଆନନ୍ଦରେ ଅଧୀର।

ତା' ପରଦିନ ସକାଳୁ ଉଠି ସେ ଆସି ବିଜୟ ଘରେ ହାଜର। ବିଜୟଠାରୁ ଟଙ୍କା ପଇସା, ଟିକଣା, ଚିଠି ସବୁ ନେଇ ଗଣେଶ ସିଧା ରାମପୁର ଗଲା। ସେଠାରେ ପହଞ୍ଚି ସେ ପଚାରି ପଚାରି ଯାଇ ସିନ୍ଧୁବାବୁଙ୍କ ଘରେ ପହଞ୍ଚିଲା। ଗଣେଶ ଅତି ଉତ୍ସାହରେ ସବୁକଥା କହିଗଲା। ସିନ୍ଧୁବାବୁ ବଡ଼ ସ୍ନେହ ସହକାରେ ଗଣେଶକୁ କହିଲେ, "ଆଚ୍ଛା, ବିଜୟ ତମକୁ ପଠାଇଛି? ଥଳୀଟି ମୋତେ ଦିଅ। ମୁଁ ଯତ୍ନରେ ରଖୁଛି। ତମେ ଘର ପଛପଟକୁ ଆସ। ସେଠାରେ କୂଅ ଅଛି। ଗାଧୁଆ ପାଧୁଆ କରିନିଅ। କାଲି ଆମେ ସୁନାରି ଦୋକାନକୁ ଯିବା।"

ସିନ୍ଧୁବାବୁଙ୍କ ପୁଅ ସୁର ଗଣେଶକୁ କୂଅ ଦେଖାଇଦେଲା। ସିନ୍ଧୁବାବୁ ଗୋଟାଏ ବଡ଼ କୁଣ୍ଡ ଓ ବାଲ୍ଟି ଦେଖାଇ ଦେଇ କହିଲେ, "ଏହି ବାଲ୍ଟିରେ ପାଣି କାଢ଼ି କୁଣ୍ଡରେ ରଖି ଗାଧୋଇବ ଓ ପରେ ଏହି କୁଣ୍ଡଟିରେ ପାଣି ଭରି ରଖିବ।"

ଗଣେଶକୁ ଏପରି ବ୍ୟବହାର ଟିକିଏ ଅସୁବିଧା ଲାଗିଲା। କାରଣ ସାଧାରଣତଃ ଜଣେ ଅତିଥି ଦ୍ୱାରା ଘର ମାଲିକ ଏପରି କାମ କରାଏ ନାହିଁ। ଯାହାହେଉ ସେ ଗୁରୁଜନ ପରି ବୋଲି ତାଙ୍କ କଥା ଅନୁସାରେ ଗଣେଶ କାର୍ଯ୍ୟ କଲା। ହେଲେ ଏତେ ଦୂର ଆସିବା ପରେ ପାଣି ଭରିବା କାମ ତାକୁ ଟିକିଏ କଷ୍ଟକର ମନେ ହେଲା।

ତା'ପରେ ଖାଇବା ପାଳି। ସୁର ତାକୁ ଗୋଟିଏ ବଡ଼ ଘର ଭିତରକୁ ଖାଇବାକୁ

ଡାକ ନେଲା । ସେଠାରେ ମଧ୍ୟ ଅଦ୍ଭୁତ ବ୍ୟବହାର । ଘରର ସମସ୍ତ ଲୋକ ପିଢ଼ା ଉପରେ ବସି ଥାଳୀରେ ଖାଉଛନ୍ତି ଆଉ ଗଣେଶଙ୍କ ପାଇଁ ଖାଦ୍ୟ ଅଲଗା ବଢ଼ା ହୋଇଛି ପତରରେ । ତଥାପି ମଧ୍ୟ ସେ କିଛି କହିଲା ନାହିଁ । ମନେ ମନେ ଭାବିଲା, "ହୁଏତ ସେ ମୋତେ ଜଣେ ଚାକର ବୋଲି ଭାବୁଛନ୍ତି ।"

ଖାଇବା ପିଇବା ଶେଷ ହେବା ପରେ ସମସ୍ତଙ୍କ ପାଇଁ ଖଟ ଶେଯ ପଡ଼ିଛି । କିନ୍ତୁ ଗଣେଶଙ୍କୁ ସପଟିଏ ଶୋଇବାକୁ ଦେଲେ । ବହୁତ ଥକା ହୋଇଯାଇଥିବାରୁ ସେଇ ସପ ଉପରେ ସେ ଶୋଇଗଲା ।

ପରଦିନ ସକାଳୁ କେହି ଉଠିବା ପୂର୍ବରୁ ସିନ୍ଧୁବାବୁଙ୍କ ସ୍ତ୍ରୀ କମଳା ଆସି ଗଣେଶକୁ ଉଠାଇ କହିଲେ, "ପୁଅ, ଆଜି ଆମର ଚାକର ଆସିନାହିଁ, ଟିକିଏ ଦୁଧ ଦୁହିଁ ଦେବ ?"

ଗଣେଶ କ'ଣ ଆଉ କହିବ ? ଯାଇ ଗାଈ ଦୁହିଁ ଦେଲା । ତା'ପରେ କମଳା କୂଅରୁ ପାଣି କାଢ଼ି କେତେକ କୁଣ୍ଡ ଓ ପାତ୍ର ଭରି ଦେବାକୁ କହିଲେ, ଗଣେଶ ତାହା ମଧ୍ୟ କଲା ।

ତା'ପରେ ସକାଳର କାର୍ଯ୍ୟକର୍ମ ଶେଷ ହେବା ଉତ୍ତାରୁ ଗଣେଶ ସୁନାରି ନାଗରାଜ ପାଖକୁ ଯିବାକୁ ବାହାରିଲା । ସିନ୍ଧୁବାବୁ ମଧ୍ୟ ତା' ସହିତ ଗଲେ । ଘରୁ ବାହାରିବା ବେଳକୁ ସିନ୍ଧୁବାବୁ ଏକ ବଡ଼ ଓଜନିଆ ଥଳୀ ଧରିଥିଲେ । ସେଇଟି ଗଣେଶ ହାତରେ ଦେଇ ସେ କହିଲେ, "ଦେଖ ଗଣେଶ, ଆମେ ସୁନାରି ଘରକୁ ଯିବା ବାଟରେ ମୋର ଜଣେ





ବନ୍ଧୁ ଘର ପଡ଼ିବ। ଏଥିରେ କେତୋଟି ଲେଖାଯାଇଛି। ତାଙ୍କ ଘରେ ଦେଇ ଦେଇ ଯିବା।"

ତା'ପରେ ଦୁହେଁ ଚାଲିଲେ। ବିଚାରା ଗଣେଶର କଥାରୁ ବୋହି ବୋହି ହାତବ୍ୟଥା ହୋଇଗଲାଣି। ଯାହା ହେଉ ବନ୍ଧୁଙ୍କ ଘରେ ଦେଇ ଶେଷରେ ସେମାନେ ଯାଇ ନାଗରାଜ ଦୋକାନରେ ପହଞ୍ଚିଲେ।

ସିନ୍ଧୁବାବୁ ନାଗରାଜଙ୍କୁ ସବୁ ବୁଝାଇସାରି କହିଲେ, "ଦେଖ ନାଗରାଜ, ବିଜୟ ମୋର ଘନିଷ୍ଠ ବନ୍ଧୁ। ବିବାହର ଦଶବର୍ଷ ପରେ ତା'ର ସ୍ତ୍ରୀର ପିଲା ହେବାକୁ ଯାଉଛି। ତେଣୁ ତମେ ଏ ହାର ବହୁତ ଯତ୍ନ ପୂର୍ବକ ବନାଇବ। ଉଚିତ ଦାମ ମଧ୍ୟ ନେବ। ବେଶି ଗୁଡ଼ାଏ ତଡ଼ା ଦର କହିବ ନାହିଁ।"

ନାଗରାଜ ସବୁ ବୁଝିଲା ପରେ ହାର ବନାଇବାକୁ ଚାରିଦିନ ସମୟ ଲାଗିବ ବୋଲି କହିଲା। ସେଇ ଚାରିଦିନ ଗଣେଶକୁ ସିନ୍ଧୁ-ବାବୁଙ୍କ ଘରେ ରହିବାକୁ ହେଲା। ସେଇ ଚାରିଦିନ ସେମାନେ ଗଣେଶ ହାତରେ ବହୁତ କାମ କରାଇଲେ। ବହୁତ ଖଟାଇଲେ ହେଲେ ମୁହଁରେ ସର୍ବଦା ମଧୁର ବଚନ କହୁଥା'ନ୍ତି। ଏପରି ବ୍ୟବହାରର ରହସ୍ୟ ସେ କିଛି ବୁଝିପାରିଲା ନାହିଁ।

ଶେଷରେ ହାର ତିଆରି ହୋଇଗଲା। ଗଣେଶ ହାର ନେଇ ଆସିବା ବେଳେ ସାରା ପରିବାରର ଲୋକ ତାକୁ କହିଲେ, "ଗଣେଶ, ତମେ ଯେବେ ବି ରାମପୁର ଆସିବ, ଆମରି ଘରେହିଁ ରହିବ।" ଗଣେଶ କେବଳ ଅଳ୍ପ ହସି ମୁଣ୍ଡ ହଲାଇ ସେଠାରୁ ଚାଲି ଆସିଲା।

ହରିପୁରରେ ପହଞ୍ଚି ଗଣେଶ ବିଜୟଙ୍କୁ ହାର ଦେଲା। ବିଜୟ ବହୁତ ଖୁସି ହୋଇଗଲା। ତା'ପରେ ଗଣେଶର ଯିବା, ଆସିବା ଓ ରହିବାରେ କ'ଣ ସୁବିଧା, ଅସୁବିଧା ହେଲା ସେକଥା ମଧ୍ୟ ପଚାରିଲା। ଗଣେଶ ପ୍ରଥମେ ସିନ୍ଧୁବାବୁଙ୍କ ପରିବାରର ବ୍ୟବହାର ବିଷୟରେ କହିବାକୁ ସଙ୍କୋଚ କରୁଥିଲା। ପରେ ସବୁ ଖୋଲି କହିଲା। କାରଣ ସେ ଜାଣିବାକୁ

ଚାହୁଁଥିଲା ଜଣେ ଅଚିହ୍ନା, ଭଦ୍ର ଲୋକ ପୁଣି ଅତିଥି ସହିତ ଏପରି ବ୍ୟବହାର କରିବା ପଛରେ କି ରହସ୍ୟ ଅଛି ।

ଗଣେଶ ପଚାରିଲା, "ମଉସା, ସେ ଲୋକ ଜାଣନ୍ତି ନାହିଁ କି ଅତିଥିମାନଙ୍କ ସହିତ କିପରି ବ୍ୟବହାର କରିବାକୁ ହୁଏ ?"

ବିଜୟ କହିଲା, "ନା, ସେମାନେ ବେଶ୍ ଜାଣନ୍ତି । ଚାରିଦିନ ରହିବାର ଖର୍ଚ୍ଚଟା ବୋଧେ ସେମାନେ ଏମିତି କାମ କରାଇ ଉଠାଇ ନେଲେ । ନୀଚ, ଛୋଟଲୋକ! ସେମାନେ ଜାଣି ଜାଣି ଏପରି କରିଛନ୍ତି ।"

"କିନ୍ତୁ ମଉସା ମୋର ଯାହା ମନେହୁଏ ସେମାନେ ସେଇ ମତଲବ ନେଇ ମୋତେ ଖଟାଇ ନାହାନ୍ତି । କାରଣ ସେମାନଙ୍କ କଥାବାର୍ତ୍ତା ଓ ଅନ୍ୟାନ୍ୟ ବ୍ୟବହାର ଏତେ ମାର୍ଜିତ ଯେ ଏପରି ମତଲବ ଅନ୍ତତଃ ମୋର କଳ୍ପନାକୁ ସୁଦ୍ଧା ଆସୁନାହିଁ । ଆହୁରି କିଛି କାରଣ ଥାଇପାରେ ।" ଗଣେଶ କହିଲା ।

"ଆଉ କି କାରଣ ? ହଁ ଏପରି ବି ହୋଇପାରେ ପାଞ୍ଚମାସ ପୂର୍ବରୁ ସେ ଜଣେ ବ୍ୟକ୍ତିଙ୍କୁ ଆମ ଘରକୁ ପଠାଇଥିଲେ ଆମେ ଯେପରି ବ୍ୟବହାର ତାଙ୍କୁ କରିଥିଲୁ, ସେ ମଧ୍ୟ ତୋ ସହିତ ସେହି ବ୍ୟବହାର କରିଛନ୍ତି ।" ବିଜୟ କହିଲା ।

ଏବେ ଗଣେଶ ସବୁ ବୁଝିଗଲା । ପ୍ରକୃତରେ ଭୁଲ୍ ରହିଛି ବିଜୟ ମଉସା ପାଖରେ । ସେ କଥା ମନେ ନ ପକାଇ ଛୁଛାରେ ସିନ୍ଧୁବାବୁ ଉପରେ ରାଗୁଛନ୍ତି । ନିଜର ଭୁଲ୍ ଯୋଗୁ ପଶ୍ଚାତ୍ତାପ ନ କରି ପୁଣି ଅନ୍ୟ ଲୋକ ଉପରେ ଦୋଷାରୋପ କରି ରାଗୁଛନ୍ତି !

ଗଣେଶ ସବୁ ବୁଝିଗଲା । କିନ୍ତୁ ତା' ପାଇଁ ମଧ୍ୟ ଏହା ଏକ ଶିକ୍ଷା ହେଲା । ସେ ଭାବିଲା ଯେ କୌଣସି କଥାକୁ ଅଯଥା ମନ ବଳେଇଲେ ଏପରି ହୁଏ । ଏବେ ରାମପୁର ଯିବ ତ ନିଜେ ନିଜ କାମ ପାଇଁ ଯିବ । ଆଉ କାହାରି କାମରେ ଯାଇ କାହାରି ଘରେ ରହିବ ନାହିଁ । ଏତକ ଶିକ୍ଷା ମିଳିଲା ।





# ଚତୁର ବୁଣାକାର

ଦିନେ ମହାରାଜ ରାଜସିଂହଙ୍କ ଦରବାରକୁ ହଠାତ୍ ବୁଢ଼ାଟିଏ କାହୁଁ ଆସିଲା । କଥା ନାହିଁ ବାର୍ତ୍ତା ନାହିଁ ମହାରାଜଙ୍କ ସିଂହାସନ ଗୃହପାଖରେ ବୃତ୍ତଟିଏ ଆଙ୍କି ଦେଇ ଚୁପ୍‌ଚାପ୍ ଠିଆ ହୋଇ ରହିଲା । କଥା ତ କହୁନାହିଁ । ରାଜା ମନ୍ତ୍ରୀଙ୍କୁ ଏହାର ଅର୍ଥ ପଚାରିଲେ । ମନ୍ତ୍ରୀ ମଧ୍ୟ ନୀରବ । ଅର୍ଥ ଜାଣିଥିଲେ ତ କହିବେ । ରାଜା ରାଗିଯାଇ ଆଦେଶ ଦେଲେ ସାରା ରାଜ୍ୟ ଖୋଜି ଏକ ଚତୁର ବ୍ୟକ୍ତିକୁ ନେଇ ଆସିବାକୁ ହେବ । ଯିଏ ଏ ସମସ୍ୟାର ସମାଧାନ କରିପାରିବ ।

ମନ୍ତ୍ରୀମାନେ ଅନୁଚର ବର୍ଗ ଧରି ନାନା ଦିଗକୁ ବାହାରିଗଲେ । ଜଣେ ମନ୍ତ୍ରୀ ଦେଖିଲେ ଗୋଟିଏ ଘରେ ଝୁଲଟିଏ ଟଙ୍ଗା ହୋଇଛି ସେ ଆପଣା ଛାଏଁ ହଲୁଛି । ବୋଧହୁଏ ଛୋଟ ଛୁଆଟିଏ ଝୁଲ ଭିତରେ ଶୋଇଛି । ପୁଣି ଦୁଆରେ ଧାନ ଶୁଖୁଛି । ଚଢ଼େଇମାନେ ଧାନ ଖାଇବାକୁ ବ୍ୟସ୍ତ । ହେଲେ ସପଖଣ୍ଡେ ଟଙ୍ଗା ହୋଇ ହଲୁଛି ବୋଲି ଚଢ଼େଇମାନେ ଡରରେ ଭରସି ପଶି ପାରୁ ନାହାନ୍ତି କି ଧାନ ଖାଇପାରୁ ନାହାନ୍ତି । ସେଇଟି ମଧ୍ୟ ଆପଣା ଛାଏଁ ହଲୁଛି । ମନ୍ତ୍ରୀ ଓ ଅନୁଚରବର୍ଗ ଏ ଅଦ୍ଭୁତ ଦୃଶ୍ୟ ଦେଖି ଘର ଭିତରେ ପଶିଲେ । ଦେଖିଲେ ବୁଣାକାରଟିଏ ବସି ଲୁଗା ବୁଣୁଛି । ତାକୁ ପଚାରିଲେ, "ଏହା କିପରି ସମ୍ଭବ ?"

ବୁଣାକାର କହିଲା, "ବହୁତ ସହଜ ଅ.ଜ୍ଞା । ମୁଁ ଏଠି ଲୁଗା ବୁଣୁଛି ଓ ମୋ କଣ୍ଡା କାଠି ସହ ଦୁଇଟି ଡୋର ଲଗାଇ ଦେଇଛି । ଏଠାରେ କଣ୍ଡାକାଠି ଚାଳିଲେ ଏକା ସଙ୍ଗେ ଝୁଲ ଝୁଲୁଛି ଓ ସପ ହଲୁଛି । ଏକାଥରେ ତିନୋଟି କାମ ହୋଇ ପାରୁଛି ।"

"ତୁମର ପରି ଚତୁର ଲୋକଟିଏ ଆମର ଲୋଡ଼ା ।" ମନ୍ତ୍ରୀ ତାକୁ ଦରବାରକୁ ଆଣିଲେ ।

ପଚଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ

ବୁଣାକାର ରାଜାଙ୍କୁ ପ୍ରଣାମ କରି ସାରି ଦୂତକୁ ଟିକିଏ ଚାହିଁଲା । ତା'ପରେ ଦୂତ କନାଇ ଥିବା ବୃତ୍ତକୁ ଟିକିଏ ଚାହିଁଲା ଓ ହାତରେ ଧରିଥିବା ଗୋଲି ଦୁଇଟି ଦୂତ ଆଡ଼କୁ ଫୋପାଡି ଦେଲା ।

ଏକଥା ଦେଖି ଦୂତ କ'ଣ କଲା ନା, ତା' ମୁଣିରୁ କିଛି ଧାନ ବାହାର କରି ଚଟାଣ ଉପରେ ବିଛିଦେଲା । ଏସବୁ ଦେଖି ବୁଣାକାର ଅଳ୍ପ ହସିଲା ଓ ବାହାରକୁ ଯାଇ କୁକୁଡ଼ାଟିଏ ଆଣି ଛାଡ଼ିଦେଲା । କୁକୁଡ଼ା ସବୁ ଧାନତକ ଠୁକି ଖାଇଦେଲା । ଦୂତ ଏ ଘଟଣା ପରେ ରାଗି ସେ ସ୍ଥାନ ଛାଡି ଚାଲିଗଲା ।

ତା'ପରେ ରାଜା ବୁଣାକାରକୁ ପଚାରିଲେ, "ଏସବୁର ଅର୍ଥ କ'ଣ ?"

ବୁଣାକାର ବିନୟ ଭାବରେ କହିଲା, "ମହାରାଜ, କଥା କ'ଣ କି, ପଡ଼ୋଶୀ ରାଜ୍ୟର ରାଜା ଉଦୟଭାନୁ ଆମ ରାଜ୍ୟକୁ ଖବର ପଠାଇଛନ୍ତି ଯେ ଅଳ୍ପଦିନ ମଧ୍ୟରେ ସେ ଆମ ରାଜ୍ୟ ଘେରାଉ କରିବେ । ସେଥିପାଇଁ ଦୂତ ବୃତ୍ତଟି ଆଙ୍କିଲା ଆପଣଙ୍କ ସିଂହାସନ ଚାରିପାଖରେ । ମୁଁ ଦୁଇଟି ଗୋଲି ପକାଇ ଦେଇ ତାକୁ ଜବାବ ଦେଲି ତମେ ସବୁ ତ ଗୋଲି ଖେଳିବା ପିଲାଙ୍କ ପରି ବ୍ୟବହାର କରୁଛ ।" ପୁଣି ସେ ଧାନ ବିଛି ଉତ୍ତର ଦେଲା "ଆମ ପାଖରେ ଅଗଣିତ ସୈନ୍ୟ ଅଛନ୍ତି ।" ମୁଁ ତା'ପରେ କୁକୁଡ଼ା ଆଣି ଛାଡ଼ି ଦେଇ ଦୂତକୁ ଜବାବ ଦେଲି: "ଆମ କୁକୁଡ଼ା ଯେପରି ତୁମର ସବୁ ଧାନ ଖାଇଦେଲା, ଯୁଦ୍ଧରେ ଆମେ ତମ ସୈନ୍ୟଙ୍କ ମଧ୍ୟରୁ ଜଣକୁ ମଧ୍ୟ ଛାଡ଼ିବୁ ନାହିଁ ।" ଏହି ଖବର ନେଇ ଦୂତ ଏଠାରୁ ଚାଲିଗଲା ।

"ସାବାସ୍ ! ତମେ ବଡ଼ ବୁଦ୍ଧିମାନ ! ତମେ ଏଇଠି ରହିଯାଅ । ମୁଁ ତମକୁ ପ୍ରଧାନମନ୍ତ୍ରୀ ପଦ ଦେବି ।" ରାଜା କହିଲେ ।

"ଆପଣଙ୍କ କୃପା ପ୍ରତି ଧନ୍ୟବାଦ । ହେଲେ ମୋର ବହୁତ କାମ ପଡ଼ିଛି, ମୁଁ ଯାଏଁ । ପରେ ସେସବୁ କଥା ।" ଏତିକି କହି ବୁଣାକାର ସେ ସ୍ଥାନ ଛାଡି ଚାଲିଗଲା ।



# କଂଜୁସ୍‌ର ତୀର୍ଥଭ୍ରମଣ

ସେଠ ଗୋବିନ୍ଦ ନାରାୟଣ ଧନୀ ହେଲେ ମଧ୍ୟ କଂଜୁସ୍ ଥିଲେ । ଥରେ ସେ ତୀର୍ଥ ଭ୍ରମଣରେ ଯିବାକୁ ଚାହାଁଲେ । କିନ୍ତୁ ଟଙ୍କା ଖର୍ଚ୍ଚ କରିବାକୁ ନାରାଜ । ଶେଷରେ ତାଙ୍କୁ ଏକ ଉପାୟ ଦିଶିଲା; ସେ ଟିଣ ପଟାଟିଏ ବେକରେ ଝୁଲାଇଲେ । ସେଥିରେ ଲେଖାଥିଲା, "ବଗୃର କାଲ ଓ ବୋବାକୁ ଦୟାକର" । ତା'ପରେ ତୀର୍ଥ ବୁଲିଲେ । ବହୁତ ପଇସା ମଧ୍ୟ ରୋଜଗାର କରୁଥା'ନ୍ତି । ଦିନେ ଗୋଟିଏ ତୀର୍ଥରେ ତାଙ୍କୁ ଚିହ୍ନିଥିବା ଦୁଇଜଣ ଲୋକ ତାଙ୍କୁ ଦେଖିଲେ । ସେମାନେ ତାଙ୍କୁ ଶୁଣାଇ ଶୁଣାଇ କହିଲେ, "ଆରେ ଭାଇ, ସେଠଙ୍କୁ ଜଣାନାହିଁ ଯେ ବଢିରେ ତାଙ୍କର ଘରଦ୍ୱାର ଜମି ଜମା ସବୁ ଭାସି ଯାଇଛି ।" ଆଉ ଜଣେ କହିଲା, "ସେ ତ କାଲ ହୋଇ ଗଲେଣି । ଆମ କଥା କ'ଣ ଶୁଣିପାରିବେ କି ?"

"ବଢ଼ିରେ ମୋର ସବୁ ଭାସିଗଲା ?" ସେଠ ଚିତ୍କାର କଲେ । ତାଙ୍କ ପାଟି ଶୁଣି ଲୋକମାନେ ତାଙ୍କୁ ଘେରିଗଲେ ଓ କହିଲେ, "ଆରେ ଏ ପାପୀ ମିଛରେ ସୁଆଙ୍ଗ କରୁଛି, କାଲ ନୁହେଁ କି ବୋବା ନୁହେଁ ।" ସମସ୍ତେ ମିଶି ତାଙ୍କୁ ବହୁତ ପିଟିଲେ ।

ସେଠ ମାଡ଼ ଖାଇ ସେ ଦୁଇ ଲୋକଙ୍କୁ ଖୋଜି ଦେଖିଲେ ସେମାନେ କେତେବେଳୁ ସେ ସ୍ଥାନ ଛାଡି ଚାଲି ଗଲେଣି । ସେଠ ବୁଝିପାରିଲେ ସେମାନେ ଏପରି ମିଛ କହି ପଳାଇଛନ୍ତି । ନିଜ ମନ୍ଦବୁଦ୍ଧି ପାଇଁ ସେ ପଶ୍ଚାତ୍ତାପ କଲେ ଓ ତୀର୍ଥଭ୍ରମଣ ସେହିଠାରେହିଁ ସମାପ୍ତ ହେଲା ।





# ମହୁଆ ପକ୍ଷୀ

ଆଫ୍ରିକାର ପାହାଡ଼ିଆ ଅଞ୍ଚଳରେ ଥାଏ ଗ୍ରାମଟିଏ । ସେଠାରେ କ୍ୱାତୋ ଓ ନ୍ୟାମୋ ନାମକ ଦୁଇ ଭାଇ ସେମାନଙ୍କ ପିତାମାତାଙ୍କ ସହ ବାସ କରୁଥା'ନ୍ତି । ଦୁହେଁ ଶୀକାର କରିବା ପାଇଁ ପ୍ରାୟ ଦୁଇଦିନ ଛଡ଼ା ଘନ ଜଙ୍ଗଲକୁ ଯା'ନ୍ତି । ସେମାନଙ୍କୁ ବଣ ଭିତରଟା ଘର ପରି ଲାଗୁଥାଏ ।

ଦିନେ ଶୀକାର କରିବାକୁ ଯାଇ ଦୁହେଁ ଘନ ଜଙ୍ଗଲ ମଧ୍ୟରେ ପ୍ରବେଶ କଲେ । ତେଣିକି ଆଉ ବାଟଚଲା ରାସ୍ତା ନାହିଁ । ଯାଉଁ ଯାଉଁ ଦେଖିଲେ ଗୋଟିଏ ପଥର ଉପରେ ତିନୋଟି ହାଣ୍ଡି ଉଗୁଡ଼ା ହୋଇ ରଖା ଯାଇଛି । ସାନଭାଇ ନ୍ୟାମୋ କହିଲା, "ଭାଇ, ଇଏ ତ ବଡ଼ ଆଶ୍ଚର୍ଯ୍ୟ କଥା କି ଏ ଘନ ଜଙ୍ଗଲରେ କିଏ ହାଣ୍ଡିମାନ ଆଣି ରଖିଛି ! ଚାଲ ଦେଖିବା ସେଥିରେ କ'ଣ ଅଛି ।"

ବଡ଼ ଭାଇ କ୍ୱାତୋ ଟିକିଏ ଭୟାଳୁ । ସେ କହିଲା, "ନାହିଁ, ନାହିଁ, ନଜାଣି ନଶୁଣି ଆମେବୃଥାରେ କାହିଁକି ସେଥିରେ ହାତ ଦେବା ! ଥାଉ, ଆଗକୁ ଚାଲ ।"

ନ୍ୟାମୋ ସେକଥା ଶୁଣିଲା ନାହିଁ । ନ୍ୟାମୋ ଥିଲା ସାହସୀ । କୌତୁହଳବଶତଃ ସେ ହାଣ୍ଡିଗୁଡ଼ିକ ଖୋଲିବାକୁ ଗଲା । କ୍ୱାତୋ ଭୟରେ ଦୂରକୁ ଦୌଡ଼ି ଯାଇ ଲକ୍ଷ୍ୟ କରି ଦେଖିଲା କ'ଣ ହେଉଛି । ନ୍ୟାମୋ କିନ୍ତୁ ନିର୍ଭୟରେ ଗୋଟାଏ ପରେ ଗୋଟାଏ ହାଣ୍ଡି ଖୋଲିଲା । ତା' ଭିତରେ କିଛି ନଥିଲା । କିନ୍ତୁ ଶେଷ ହାଣ୍ଡିଟି ଟେକୁ ଟେକୁ ତା' ଭିତରୁ ଫସ୍ କରି ଏକ ଛୋଟ ଖଙ୍ଗାଳିଆ ବୁଢ଼ୀଟିଏ ବାହାରି ଆସିଲା । ବୁଢ଼ୀଟି ଚାଖଣ୍ଡେ ଉଚ୍ଚ ହେବ ଓ ସୁନ୍ଦର ରଙ୍ଗୀନ୍ ପୋଷାକ ସବୁ ପିନ୍ଧିଥାଏ ।



ବୁଢ଼ୀ ନ୍ୟାମୋକୁ ଦେଖି ହସିଲା ଆଉ କ୍ୱାତୋକୁ ଚାହିଁ କହିଲା, "ଭୟାଳୁ, କାପୁରୁଷ, ତୁ ଥରୁଛୁ କାହିଁକି ? ମୁଁ ତୋର କିଛି କରିବ ନାହିଁ । ମୋ ସହିତ ତୁମେ ଦୁହେଁ ଆସ । ବହୁତ ମଜାକଥା ଦେଖାଇବ ।"

କ୍ୱାତୋ କିଛି ଉତ୍ତର ଦେଲାନାହିଁ । କିନ୍ତୁ ନ୍ୟାମୋ ବୁଢ଼ୀ ପଛେ ପଛେ ଗଲା । କ୍ୱାତୋ ଦୂରରୁ ସବୁ ଦେଖୁଥାଏ । କିଛିଦୂର ଗଲା ପରେ ବୁଢ଼ୀ କୁରାଢ଼ୀଟିଏ ନ୍ୟାମୋକୁ ଦେଇ କହିଲା, "ଏଇ ଯେଉଁ ଶୁଖିଲା ଗଛଟି ଦେଖୁଛୁ ମୋ ପାଇଁ ଟିକିଏ କାଟିଦେବୁ ?"

ନ୍ୟାମୋ ବୁଢ଼ୀ ହାତରୁ କୁରାଢ଼ୀଟି ନେଇ ଗଛ କାଟିବାକୁ ଗଲା । ଗଛରେ ପ୍ରଥମ ପାହାର ଦେଇଛି ସେଥିରୁ ବାହାରି ଆସିଲା ଗାଈଟିଏ । ଏଇପରି ସେ ଏକ ପରେ ଏକ ପାହାର ଦେଉଛି ଆଉ ସେଥିରୁ ବାହାରିଲେ ଅନେକ ଗାଈଗୋରୁ, ମଇଁଷି, ଛେଳି, ମେଣ୍ଢା । ଯେତେବେଳେ ବଡ଼ ଦଳଟିଏ ହୋଇଗଲା, ବୁଢ଼ୀ କହିଲା, "ଏବେ ଥାଉ, ଏ ପଶୁମାନେ ଆଜିଠାରୁ ତୋର । ଘରକୁ ନେଇ ଯା । ମୁଁ ଏବେ ଯାଉଛି । ବିପଦ ପଡ଼ିଲେ ମୋତେ ସ୍ମରଣ କରିବୁ ।" ଏତିକି କହି ବୁଢ଼ୀ ଉଭାନ ହୋଇଗଲା ।

କ୍ୱାତୋ ପାଖକୁ ଆସି ନ୍ୟାମୋ କହିଲା, "ଦେଖ ଭାଇ, ଏତକ ମୋତେ ବୁଢ଼ୀମା ଦେଇଛି । ଚାଲ ଏମାନଙ୍କୁ ନେଇ ଘରକୁ ଯିବା । ବାପା ମା ବହୁତ ଖୁସି ହେବେ । ଆମର ମଧ୍ୟ ଭାଗ୍ୟ ଖୋଲିଗଲା । ଆଉ ତୁ ଡରୁଥିଲୁ କାହିଁକି ଯେ ?"

କ୍ୱାତୋକୁ ସବୁ ସ୍ୱପ୍ନ ଭଳି ଲାଗୁଥାଏ । ତେବେ ଦୁଇଭାଇ ପଶୁଗୁଡ଼ିକୁ ଅଡ଼ାଇ ଅଡ଼ାଇ ଘରକୁ ଫେରୁଥା'ନ୍ତି ।. ବାଟରେ ପ୍ରଖର ସୂର୍ଯ୍ୟତାପ ଯୋଗୁ ଦୁହିଁଙ୍କୁ ବହୁତ ଶୋଷ ହେଲା । କିନ୍ତୁ ଯେତେ ଖୋଜିଲେ ମଧ୍ୟ ଜଳ ପାଇଲେ ନାହିଁ । ସେମିତି ଶୋଷରେ ଚାଲିଥା'ନ୍ତି । ହଠାତ୍ ଜଳସ୍ରୋତର ଶବ୍ଦ ଶୁଣିବାକୁ ପାଇଲେ । କିନ୍ତୁ କେଉଁଠି କିଛି ଦେଖି ପାରିଲେ ନାହିଁ । କାନ ପାତି ଶୁଣିଲେ ପାହାଡ଼ର ବହୁତ ତଳ ଦେଶରେ ଏକ ଛୋଟ ଝରଣା

ବୋହୁଛି । କିନ୍ତୁ ସେଠାରୁ ଓହ୍ଲାଇବାର ବାଟ ନାହିଁ । କ୍ୱାଚୋ କହିଲା, "ପ୍ରଥମେ ତୁ ମୋତେ ଦଉଡ଼ିରେ ବାନ୍ଧି ତଳକୁ ପକା, ମୁଁ ପାଣି ପିଇ ଫେରି ଆସିଲେ ତତେ ପୁଣି ଦଉଡ଼ିରେ ବାନ୍ଧି ତଳକୁ ପକାଇବି ।"

ନ୍ୟାମୋ ସେହିପରି କଲା । ପାଣି ପିଇସାରି କ୍ୱାଚୋ ଉପରକୁ ଆସିଲା । ତା'ପରେ ନ୍ୟାମୋର ପାଳି ପଡ଼ିଲା । କ୍ୱାଚୋ ତାକୁ ଦଉଡ଼ିରେ ବାନ୍ଧି ତଳକୁ ଖସାଇଲା । ସେ ତଳେ ଓହ୍ଲାଇ ପାଣି ପିଉଛି, ଏହି ସମୟରେ କ୍ୱାଚୋ ମୁଣ୍ଡକୁ ହଠାତ୍ ଲୋଭ ଗ୍ରାସ କଲା ଓ ତା' ମନରେ ଦେଖାଦେଲା ଏକ ଦୁଷ୍ଟ ବୁଦ୍ଧି । ସେ ଦଉଡ଼ିଟା ତଳକୁ ପକାଇ ଦେଲା ଓ ପଶୁମାନଙ୍କୁ ଧରି ଆନନ୍ଦରେ ଘରକୁ ଫେରିଲା । ବିଚରା ନ୍ୟାମୋ ସେଇ ପାହାଡ଼ ତଳେହିଁ ପଡ଼ି ରହିଲା ।"

ଘରେ ପହଞ୍ଚି ସମସ୍ତଙ୍କୁ ନିଜର ବାହାଦୁରି ଦେଖାଇ କ୍ୱାଚୋ କହିଲା, "ଜଣେ ବୁଢ଼ୀ ଏସବୁ ଗୋଲୁଗାଣ୍ଠି ମତେ ଦେଇଛି । ସେ ମନ୍ତ୍ରବଳରେ ସବୁ କିଛି କରି ଦେଇ ପାରେ ।" ସମସ୍ତେ ସବୁ ଶୁଣି ଖୁବ୍ ଖୁସି ହେଲେ । ତା'ପରେ ପଚାରିଲେ, "କିନ୍ତୁ ନ୍ୟାମୋ କାହିଁ ?"

"କ'ଣ ହେଲା ? ନ୍ୟାମୋ ଏପର୍ଯ୍ୟନ୍ତ ଘରେ ପହଞ୍ଚି ନାହିଁ, ସେ ତ ମୋ ଆଗରୁ ଘରକୁ ଆସିଲା ।" କହିଲା କ୍ୱାଚୋ ।



ବହୁତ ସମୟ ଅପେକ୍ଷା କରି ନ୍ୟାମୋ ନ ଫେରିବାରୁ ବାପା ମା' ଟିକିଏ ଚିନ୍ତିତ ହେଲେ । ତଥାପି ମଧ୍ୟ ସେ ଫେରିଲା ନାହିଁ । ସେମାନେ ଭାବିଲେ ବୋଧହୁଏ ବଡ଼ ଶୀକାର ପାଇ ଦୂରକୁ ଚାଲି ଯାଇଛି । ତେବେ ନ୍ୟାମୋର ସାହସ ଓ ବୁଦ୍ଧି ଉପରେ ବାପା ମା'ଙ୍କର ଖୁବ୍ ଆସ୍ଥା ଥିଲା । ତେଣୁ ସେମାନେ ଅଧିକ ଚିନ୍ତା ନ କରି ଶୋଇଗଲେ ।

ପରଦିନ ସକାଳୁ ଗାଁର ଝିଅମାନେ ପାଣି ଆଣିବାକୁ ନଦୀକୁ ଯାଇଥିଲେ । ଦେଖିଲେ ଏକ ସୁନ୍ଦର ମହୁଆ ପକ୍ଷୀ ଉଡ଼ି ବୁଲୁଛି । ସେମାନେ ଦୌଡ଼ିଯାଇ ଗାଁରେ ଖବର ଦେଲେ କି ମହୁଆ ପକ୍ଷୀ ଆସିଛି ଓ ସୁନ୍ଦର ସ୍ୱରରେ ଶବ୍ଦ କରୁଛି ।

ସେମାନଙ୍କର ବିଶ୍ବାସ ଏ ପକ୍ଷୀର ପଶ୍ଚାଦ୍‌ଗମନ କଲେ ମହୁଫେଣାର ସନ୍ଧାନ ମିଳିବ ।

ଗ୍ରାମର ପୁରୁଷଲୋକମାନେ ପକ୍ଷୀର ପିଛା କଲେ । ପକ୍ଷୀଟି ଦୂରରୁ ଦୂରକୁ ଉଡୁଥାଏ । ଟିକିଏ ବସେ, ପୁଣି ଉଡ଼େ । ଏମାନେ ମଧ୍ୟ ତା' ପଛରେ ଦୌଡୁଥା'ନ୍ତି । କିଛିବାଟ ଗଲା ପରେ ଥୋକେ ଲୋକ କ୍ଳାନ୍ତ ହୋଇ ଫେରି ଆସିଲେ । କିନ୍ତୁ କ୍ୱାଚୋର ବାପା ଓ ଅନ୍ୟ କେତେକ ଲୋକ ତଥାପି ମଧ୍ୟ ପକ୍ଷୀ ପଛରେ ଦୌଡୁଥା'ନ୍ତି । ଅନେକ ଦୂର ଯାଇ ଦେଖିଲେ ପକ୍ଷୀ ଏକ ପଥର ଉପରେ ବସିଲା । ତା' ପାଖରେ ପାହାଡ଼ର ଏକ ଗଭୀର ଖାଇ । ତଳେ ଝରଣାର ଶବ୍ଦ । ଏମାନେ ଭାବିଲେ ବୋଧେ ଏଇ ପଥରର ପାଦ ଦେଶରେ ଝରଣା କୂଳରେ କୌଣସି ଗଛରେ ମହୁଫେଣା ଅଛି । ସେମାନେ ଉପରୁ ଉହୁଙ୍କି ଚାହିଁଲେ । ଝାପସା ଜଣେ ମଣିଷର ଆକୃତି ଝରଣା ପାଖରେ ଅଧା ଅନ୍ଧାର ମଧ୍ୟରେ ଦେଖା ଯାଉଛି । ଡକାଡକି କରି ଜାଣିଲେ ସେ ନ୍ୟାମୋ । ନ୍ୟାମୋର ବାପା ଓ ଅନ୍ୟମାନେ ଦଉଡ଼ି ଆଣି ତାକୁ ସେଠାରୁ ଉଦ୍ଧାର କଲେ । ନ୍ୟାମୋ ଉପରକୁ ଆସି ଗତଦିନର ସାରା ଘଟଣା ବିଷୟରେ କହିଲା । ତା' ବାପା କାନ୍ଦି କାନ୍ଦି କହିଲା, "ପୁଅ, ମୁଁ ଜାଣି ନଥିଲି ମୋର ନିଜର ସନ୍ତାନ ଏପରି ନୀଚ ବ୍ୟବହାର କରିପାରିବ । ମହୁଆ ପକ୍ଷୀର ଦୟାରୁ ତୁ ବଞ୍ଚିଗଲୁ । ନହେଲେ ତୋର ଅବସ୍ଥା କ'ଣ ହୋଇଥା'ନ୍ତା ?"

ଅନ୍ୟମାନେ କହିଲେ, "ଏବେ କାନ୍ଦିଲେ କ'ଣ ହେବ ? ଚାଲ, ସେ ପାପୀକୁ ଏମିତି ପିଟିବା ଯେ ଜୀବନରେ ସେ ଉଚିତ୍ ଶିକ୍ଷା ପାଇବ ।"

କ୍ୱାଚୋ ଅନ୍ୟ ଲୋକଙ୍କ ମୁଖରୁ ସମସ୍ତ ଘଟଣା ଶୁଣି ଲଜ୍ଜା ଓ ଭୟରେ ଛଟପଟ ହେଲା । ସେ ଜାଣେ ସେମାନେ ପହଞ୍ଚିଲେ ତା'ର ଅବସ୍ଥା କ'ଣ ହେବ । ତେଣୁ ସେମାନେ ଆସିବା ପୂର୍ବରୁ ସେ ଘରଛାଡ଼ି ଲୁଚି କୁଆଡ଼େ ପଳାଇଗଲା ।





## ପେଙ୍ଗୁଇନ୍‌ର ଅଣ୍ଡା

ପେଙ୍ଗୁଇନ୍‌ର ପାଦ ପାଖରେ ଥଳୀ ପରି ଏକ ଖୋପରେ ସେ ଅଣ୍ଡା ଉଷୁମାଏ । ସେ ଗୃଲଣ୍ ଡିଗ୍ରୀ ସେଣ୍ଟିଗ୍ରେଡ୍ ଉତ୍ତାପ ସୃଷ୍ଟି କରି ସେଥିରେ ଅଣ୍ଡା ରଖେ ଏବଂ ତା'ପରେ ଛୁଆ ଫୁଟାଏ ।



## ଭ୍ରମ

କେହି କେହି କହନ୍ତି କଙ୍କଡା ବିଛା ନିଆଁ ଭିତରେ ପଡ଼ିଗଲେ ନିଜେ ନିଜକୁ ନାଙ୍ଗୁଡ଼ରେ ମାରି ଆତ୍ମ-ହତ୍ୟା କରେ କିନ୍ତୁ ତାହା ଏକ ଭ୍ରମ ଧାରଣା । ସମସ୍ତ ବିଷାକ୍ତ ପ୍ରାଣୀଙ୍କ ପରି ତା'ର ମଧ୍ୟ ନିଜ ବିଷ ନିଜ ଶରୀରର କୌଣସି କ୍ଷତି କରେ ନାହିଁ ।

## କସରା ଭାଲୁର ଖାଦ୍ୟ

କସରା ଭାଲୁ ପ୍ରାୟତଃ ନିରାମିଷ ଖାଦ୍ୟ ଉପରେ ନିର୍ଭର କରିଥାଏ । ତେବେ ବେଳେ ବେଳେ ଛୋଟ ଛୋଟ ପ୍ରାଣୀ ପତଙ୍ଗ ଖାଇବାରେ ତା'ର ଆପତ୍ତି ନଥାଏ, ମିଳିଲେ ଖାଇନିଏ ।



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ. ୫୦

ପୁରସ୍କୃତ ପରିଚୟୋକ୍ତି ଏପ୍ରିଲ ୧୯୮୭ ସଂଖ୍ୟାରେ ପ୍ରକାଶ ପାଇବ



P G. Viswanathan



P. G. Viswanathan

★ ଉଭୟ ଫଟୋ ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଫେବ୍ରୁଆରି ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର। ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ। ★ ପରିଚୟୋକ୍ତି ସହ ପ୍ରେରକଙ୍କ ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

---

ଡିସେମ୍ବର '୮୬ ପ୍ରତିଯୋଗିତାର ଫଳ

ପ୍ରଥମ ଫଟୋ : ଦେଖ ବାବୁଙ୍କର ବସିବା ଠାଣି !

ଦ୍ୱିତୀୟ ଫଟୋ : ଘରେ ନାହିଁ ଏଣେ ଟୋପାଏ ପାଣି !!

ପୁରସ୍କାର ବିଜୟିନୀ : ସଞ୍ଜିବନୀ ସୁଧା ରାଉତରାୟ, ଢେଙ୍କାନାଳ।

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।


ଜହ୍ନମାମୁଁ

ବାର୍ଷିକ ଦେୟ : ଟ. ୩୦-୦୦

ମନିଅର୍ଡର ପଠାଇବା ଠିକଣା :

ଡଲ୍ଟନ୍ ଏଜେନ୍ସିଜ୍, ଚନ୍ଦାମାମା ବିଲ୍ଡିଂସ୍, ବଡ଼ପଲନୀ, ମାଡ୍ରାସ-୬୦୦୦୨୬

ବିଦେଶ ସକାଶେ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାକୁ ଲେଖନ୍ତୁ :

ଚନ୍ଦାମାମା ପବ୍ଲିକେଶନ୍ସ, ଚନ୍ଦାମାମା ବିଲ୍ଡିଂସ୍, ବଡ଼ପଲନୀ, ମାଡ୍ରାସ-୬୦୦୦୨୬

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISWANATHA REDDI on behalf of CHANDAMAMA PUBLICATIONS, Chandama-

**A BRIGHT NEW TRADITION IS BUILT by THE READERS OF**

# THE HERITAGE

FEATURES AND FICTION FOR TODAY AND TOMORROW



The span of one and half years is not a long time, yet given will and goodwill, enough of a time to build a healthy, meaningful and intelligent reading tradition.

SLOWLY BUT STEADILY THE ELITE OF INDIA AND MANY LOVERS OF INDIAN CULTURE ABROAD ARE UNITING IN THE HERITAGE.

* THE HERITAGE reveals the fourth dimension of life to you—through series like *"The Other Experience"* and *"Fables and Fantasies for Adults"*.
* THE HERITAGE brings to you the best of creative literature of Contemporary India—stories, novels and poems.
* THE HERITAGE features pictorial articles on places and monuments delving into their *roots.*
* THE HERITAGE takes you to a tour of the *Little-Known India.*

